# GITAGOBINDA.

ଶ୍ରୀ ଜୟଦେବଗୋସ୍ୱାମିଙ୍କ ବିରଚିତ ।

# ଗୀତଗୋବିନ୍ଦ ।

ଧରଣୀଧରଙ୍କ ଅର୍ଥସହିତ ।

କଟକ ପ୍ରିଣ୍ଟିଂକମ୍ପାନୀଙ୍କ ଯନ୍ତ୍ରାଳୟରେ

ସପ୍ତମବାର

ମୁଦ୍ରିତ ହୋଇ ପ୍ରକାଶିତ ହେଲା ।

CUTTACK,

Printed by the

Cuttack Printing Company

1897

ମୂଲ୍ୟ ଟ ୦ ।୵ ଛଅଣା ମାତ୍ର ।




## ପ୍ରଥମସର୍ଗଃ ।

ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମସ୍ତମାଲଦ୍ରୁମୈ-
ର୍ନକ୍ତଂ ଭୀରୁରୟଂ ତ୍ୱମେବତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱକୁଞ୍ଜଦ୍ରୁମଂ
ରାଧାମାଧବୟୋର୍ଜୟନ୍ତି ଯମୁନାକୂଳେ ରହଃ କେଳୟଃ । ୧ ।

---

ରାଗ କେଦାର । ଚକ୍ରକେଳି ବାଣୀରେ ।

ମାୟା ରଚିଲେ ଦେବ ମାୟାଧର । ମେଘ ଆସି ଆଚ୍ଛାଦିଲା ଅମ୍ବର । ୧ । ନବଘନ ନୀଳମେଘ ପ୍ରକାଶିଲା । ବିପିନ ଗିରି ଶ୍ୟାମଳ ଦିଶିଲା । ୨ । ନୀଳତମାଳତରୁ ଘନଲତା । ଦେଖିଣ ନନ୍ଦ ପାଇଲେକ ଚିନ୍ତା । ୩ । ରାଧାକୁ ବୋଲନ୍ତି ବରଜପତି । ଗୋଡ଼ାଇ ଅଇଲାଟି ଏ ଶ୍ରୀପତି । ୪ । ନିଶାରେ ଗୋଗୋଷ୍ଠେ କରିବ ଭୟ । ଗୃହେ ପ୍ରବେଶ କରାଅ ତନୟ । ୫ । ଏମନ୍ତେ ନନ୍ଦର ଆଦେଶ ଦେଲେ । ଚଳିଗଲେ ରାଧା ମାଧବ ବେନି । ଯମୁନାକୂଳେ ଘନତରୁବର । ଲତାନିକୁଞ୍ଜ ଗୃହର ଆକାର ।୭। ନିର୍ଜନ ପ୍ରସରଭୂମିରେ ମେଳି । ନିକୁଞ୍ଜେ ନିକୁଞ୍ଜେ କରନ୍ତି କେଳି । ୮ । ରତିବନ୍ଧେ ରସକ୍ରୀଡ଼ା ଯେତେ । ତାହା ନରୂପି କହିବଇଁ କେତେ । ୯ ଏକ ଆରକେ ଚିତ୍ରବନୀ ହୋଇ । ମିଳିଲେ ନନ୍ଦ-ସଦନରେ ଯାଇଁ । ୧୦ ।

ବାଗ୍ଦେବତାଚରିତଚିତ୍ରିତଚିତ୍ତସଦ୍ମା
ପଦ୍ମାବତୀଚରଣଚାରଣଚକ୍ରବର୍ତ୍ତୀ ।
ଶ୍ରୀବାସୁଦେବରତିକେଳିକଥାସମେତ-
ମେତଂ କରୋତି ଜୟଦେବକବିଃ ପ୍ରବନ୍ଧଂ । ୬
ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସକଳାସୁ କୁତୂହଳଂ
ମଧୁର କୋମଳକାନ୍ତପଦାବଳୀଂ
ଶୃଣୁ ତଦା ଜୟଦେବସରସ୍ୱତୀଂ । ୩

ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଲାଘ୍ୟୋ ଦୁରୂହଦ୍ରୁତେ ।

---

ବଚନ ଦେବତାଚରିତ୍ରେ ଯାର । ଚିହ୍ନିତ ହୋଇଛି ଚିତ୍ତସ-ଦ୍ମର । ୧୧ । ପଦ୍ମାବତୀର ଚରଣଚାରଣ । ଚକ୍ରବର୍ତ୍ତୀପଣେ ଅଟେ ନିପୁଣ । ୧୨ । ସେ ଶ୍ରୀ କେଶବ ରତିକେଳିକଥା । ଯୁକ୍ତ ପ୍ରବନ୍ଧ କରୁଅଛି ଗାଥା । ୧୩ । ଶ୍ରୀଜୟଦେବଙ୍କ କବିତା-ରସ । କର୍ଣ୍ଣେ ପାନ କଲେ ହେବ ହରଷ ।୧୪। ଯେବେ ସୁଜନେ ହରିସ୍ମରଣରେ । ସରସମନ କରିଛ ନିର୍ଭରେ । ୧୫ । ଯେବେ ସକଳ ବିଳାସକଳାରେ । କୁତୂହଳ ମନ ହୋଇ ସେ ପାରେ । ୧୬ । ମଧୁର କୋମଳପଦେ ରଚିତ । ଶ୍ରବଣ କର ଜୟଦେବ ଗୀତ । ୧୭ । ଉମାମତିଧର ଏକହିଁ ବ୍ୟକ୍ତି । ବଚନପଲ୍ଲବେ ଅଟେ ତା-ଶକ୍ତି । ୧୮ । କଠିନ ଦୁର୍ବୋଧ ଶୀଘ୍ର ରଚନା । ଶରଣ କେବଳ ଜାଣନ୍ତି ହିନା । ୧୯ । ଶୃଙ୍ଗାରରସ ରଚନାରେ କେହି । ଗୋବର୍ଦ୍ଧନାଚାର୍ଯ୍ୟ ସମାନ ନାହିଁ । ୨୦ । କବି-ଭୂପତି ଧୋୟୀ-

ଶୃଙ୍ଗାରୋତ୍ତରସତ୍ପ୍ରମେୟରଚନୈରାଚାର୍ଯ୍ୟ ଗୋବର୍ଦ୍ଧନଃ
ସ୍ପର୍ଦ୍ଧୀ କୋଽପି ନ ବିଶ୍ରୁତଃଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ । ୪ ।

ମାଲବଗୌଡ଼ାରାଗେଣ ରୂପକତାଳେନ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ନିତମ୍ବିନୀଚୁମ୍ବିତବକ୍ତ୍ରପଦ୍ମଃ ଶୁକଦ୍ୟୁତିଃ କୁଣ୍ଡଳବାନ୍ ପ୍ରମତ୍ତଃ ।
ସଙ୍ଗୀତଶାଳାଂ ପ୍ରବିଶନ୍ ପ୍ରଦୋଷେ ମାଲାଧରୋ ମାଳବରାଗରାଜଃ ।

ପ୍ରଳୟପୟୋଧିଜଲେ ଧୃତବାନସି ବେଦଂ
ବିହିତବହିତ୍ରଚରିତ୍ରମଖେଦଂ ।
କେଶବ ଧୃତ ମୀନଶରୀର ଜୟ ଜଗଦୀଶ ହରେ । ଧ୍ରୁବ । ୫॥

ନାମେ ରାଜା । ଶ୍ରୁତିଧର ବୋଲି ଲୋକେ ତା ପୂଜା । ୬୧ ।
ବଚନମାନଙ୍କ ସନ୍ଦର୍ଭଶୁଦ୍ଧି । ଜୟଦେବ ଏକା ଜାଣେ ସୁବୁଦ୍ଧି ।୬୨
ସୁଜନେ ଶୁଣ ହୋଇ ଏକଚିତ୍ତ । କୃଷ୍ଣର ରସକ୍ରୀଡ଼ା ଏହି ଗୀତ
୬୩ । ପ୍ରଥମଛାନ୍ଦ ପଦବନ୍ଧ ଏହି । ଶୁଣନ୍ତେ ଦୁରିତ ଏଠି ହର-
ଇ ।୬୪। ଗୋବିନ୍ଦପାଦସରୋଜଯୁଗଳ । ନବବିକଚ କମଳର
ଦଳ ।୬୫। ଧରଣୀଧର ଶିରର ମଣ୍ଡନ । ଭବଘୋରତିମିରର
ଖଣ୍ଡନ । ୬୬ ।

ଦ୍ୱିତୀୟଛାନ୍ଦ । ମାଳବ ।

ଜୟ ଜୟ ଜଗନ୍ନାଥ ଦେବ ମଧୁହାର । ତୁମ୍ଭର ମହିମା
କେହୁ କହିବ ବିସ୍ତାର ।୧। ଚତୁର୍ମୁଖ, ତ୍ରିନୟନ, ସହସ୍ରଲୋ-
ଚନ । କହନ୍ତେ କେତେହେଁ କାଳେ ନ ଯିବ ଲେଖନ ।୨।
ମାନବ ମାଧବ ଅବା କହିବ ମୁଁ କେତେ । ସାଧୁପ୍ରାଣୀ ଗୁରୁଆନ୍ତ

କ୍ଷିତିରତିବିପୁଲତରେ ତବ ତିଷ୍ଠତି ପୃଷ୍ଠେ
ଧରଣୀଧରଣକିଣଚକ୍ରଗରିଷ୍ଠେ ।
କେଶବ ଧୃତ କଚ୍ଛପରୂପ ଜୟ ଜଗଦୀଶ ହରେ । ୨ ।
ବସତି ଦଶନଶିଖରେ ଧରଣୀ ତବ ଲଗ୍ନା ।
ଶଶିନି କଳଙ୍କକଳେବ ନିମଗ୍ନା ।
କେଶବ ଧୃତ ଶୂକରରୂପ ଜୟ ଜଗଦୀଶ ହରେ । ୩।
ତବ କରକମଲବରେ ନଖମଦ୍ଭୂତଶୃଙ୍ଗଂ
ଦଲିତ ହିରଣ୍ୟକଶିପୁତନୁଭୃଙ୍ଗଂ ।
କେଶବ ଧୃତ ନରହରିରୂପ ଜୟ ଜଗଦୀଶ ହରେ ।୮।
ଛଳୟସି ବିକ୍ରମଣେ ବଳମଦ୍ଭୁତ ବାମନ
ପଦନଖନୀରଜନିତଜନପାବନ ।
କେଶବ ଧୃତ ବାମନରୂପ ଜୟ ଜଗଦୀଶ ହରେ ।୯।

---

ଯାହା ଭକ୍ତି ଯେତେ । ୩ । ପ୍ରଳୟପୟୋଧିଜଳେ ମୀନରୂପ ଧରି । ଶଙ୍ଖା ନାମେ ଦନୁଜକୁ ହେଳାରେ ସଂହାରି ।୪। ବେଦ ହିବରଣ ଆଣି ବିଧାତାଙ୍କୁ ଦେଲ । ଜଗତହିତ କର୍ମେଣ ଛଡ଼ାଇ ଘେନିଲ । ୫ । କମଠମୂରତି ଯିତି ବସ୍ତ୍ରୀର୍ଣ୍ଣ ଗରିଷ୍ଠ । ଧଇଲ ଚକ୍ର ଆକାରେ କଠିନ ସେ ପୃଷ୍ଠ । ୬ । ଶୂକରସ୍ୱରୂପେ ମହୀ ଦନ୍ତଶିଖେ ଧରି । ଚନ୍ଦ୍ରରେ କଲଙ୍କ କି ଦଶନେ ବସୁନ୍ଧରୀ ।୭। ମହାକାୟା ବସ୍ତାରିଲ ଅଦ୍ଭୁତ ଭୁଙ୍ଗ । ଦନୁଜର କଳେବର କହନ୍ତି ସଂହ । ୮ । ହିରଣ୍ୟକଶିପୁ ନଖେ ବିଦାରିଲ ଆଣି । କରକମଳରେ ତାର ତନୁଭୃଙ୍ଗ ଜାଣି । ୯ । ଉଣ୍ଡିଲ ବଳଙ୍କ ରୂପ ଧଇଲ ବାମନ । ବିକ୍ରମି ଚରଣ ଗଲ୍ଲ ଅଶେଷ ଭୁବନ ।୧୦

କ୍ଷତ୍ରିୟରୁଧିରମୟେ ଜଗଦପଗତପାପଂ
ସ୍ନପୟସି ପୟସି ଶମିତଭବତାପଂ ।
କେଶବ ଧୃତ ଭୃଗୁପତିରୂପ ଜୟ ଜଗଦୀଶ ହରେ । ୧୦ ।
ବିତରସି ଦିକ୍ଷୁ ରଣେ ଦିକ୍‌ପତିକମନୀୟଂ
ଦଶମୁଖମୌଳିବଳିଂ ରମଣୀୟଂ ।
କେଶବ ଧୃତ ରାମଶରୀର ଜୟ ଯଗଦୀଶ ହରେ । ୧୧ ।
ବହସି ବପୁଷି ବିଶଦେ ବସନଂ ଜଳଦାଭଂ
ହଳହତି ଭୀତିମିଳିତଯମୁନାଭଂ
କେଶବ ଧୃତ ହଳଧରରୂପ ଜୟ ଜଗଦୀଶ ହରେ । ୧୨ ।

---

ଅନେକ କାଳର ଗଙ୍ଗା କମଣ୍ଡଳେ ସଞ୍ଚି । ଢାଳନ୍ତି ତବ ଚରଣେ ହରଷେ ବିରଞ୍ଚି ।୧୧। ପାଦକୁ ନ ଅଣ୍ଟି ମନ୍ଦାକିନୀ ବହିଯାଇ । ତୁଷାରକଣିକା ପ୍ରାୟ ନଖକୋଣେ ରହି ।୧୨। ତହୁଁ ସେ ଝରଇ ସୁରନଦୀ ତିନିପୁରେ । ଅପବିତ୍ରଜନଙ୍କ କଳୁଷ ଅପହରେ ।୧୩। ପର୍ଶୁଧରରୂପ ନାଥ ଅତ୍ୟନ୍ତ ବିକ୍ରମ । ଅବନୀପତିକୁଳକୁ ପ୍ରତ୍ୟକ୍ଷେ କି ଯମ । ୧୪ । ନିଶୋଧନ କଲ କ୍ଷତ୍ରି ଏକବିଂଶବାର । ସ୍ନାନ ତର୍ପଣାଦି କଲ ରୁଧିର ଜଳର ।୧୫। ଜଗତଜନମାନଙ୍କ ଯେତେ ଘୋରପାପ । ସେ ଜଳ ଅବଗାହନେ ଖଣ୍ଡେ ଭବତାପ ॥ ଦଶରଥଘରେ ରାମଚନ୍ଦ୍ର ଅବତାର । ବାନ୍ଧିଲ ସାଗରେ ସେତୁ ଯୋଜଣ ପଥର । ୧୭ । ରଣେ ରାବଣର ଦଶଶିରକୁ ହାଣି । ବଳ ଦେଇ ଦିଗପାଳମାନତ ସନ୍ତୋଷି । ୧୮ । ବଳଭଦ୍ରରୂପ ଅକଳଙ୍କ ଚନ୍ଦ୍ରକାନ୍ତି । କଟି, ନୀଳନିଚୋଳ ଯମୁନାଜଳଭ୍ରାନ୍ତି । ୧୯ । ନୀପରସପାନେ ରଙ୍ଗ ଅଳସ ଲୋଚନ।

ନନ୍ଦସି ଯଜ୍ଞବିଧେରହହ ଶ୍ରୁତିଜାତଂ
ସଦୟହୃଦୟଦର୍ଶିତପଶୁଘାତଂ ।
କେଶବ ଧୃତ ବୁଦ୍ଧଶରୀର ଜୟ ଜଗଦୀଶ ହରେ । ୧୩ ।
ମ୍ଳେଚ୍ଛନିବହନିଧନେ କଳୟସି କରବାଳଂ
ଧୂମକେତୁମିବ କମପି କରାଳଂ ।
କେଶବ ଧୃତ କଲ୍କି ଶରୀର ଜୟ ଜଗଦୀଶ ହରେ । ୧୪ ।
ଶ୍ରୀଜୟଦେବକବେରିଦମୁଦିତମୁଦାରଂ
ଶୃଣୁ ଶୁଭଦଂ ସୁଖଦଂ ଭବସାରଂ ।
କେଶବ ଧୃତ ଦଶବିଧରୂପ ଜୟ ଜଗଦୀଶ ହରେ । ୧୫ ।
ବେଦାନୁଦ୍ଧରତେ ଜଗନ୍ତି ବହତେ ଭୂଗୋଳମୁଦ୍‌ବିଭ୍ରତେ
ଦୈତ୍ୟାନ୍ ଦାରୟତେ ବଳିଂ ଛଳୟତେ କ୍ଷତ୍ରକ୍ଷୟଂ କୁର୍ବତେ ।
ପୌଲସ୍ତ୍ୟଂ ଜୟତେ ହଳଂ କଳୟତେ କାରୁଣ୍ୟମାତନ୍ୱତେ
ମ୍ଳେଚ୍ଛାନ୍ ମୂର୍ଚ୍ଛୟତେ ଦଶାକୃତିକୃତେ କୃଷ୍ଣାୟ ତୁଭ୍ୟଂ ନମଃ ।୧୬।

---

ତାକନ୍ତ ଯମୁନାଜଳ ହୁଅ ସାବଧାନ ।୨୦। ଏତେ ବୋଲି ହଳ-
ଧାରୀ ତରଙ୍ଗିଣୀ ଭେଦ । ଭୟରେ ତୁରତେ ଅସି ମିଳଇ କାଳି-
ନ୍ଦୀ । ସଦୟହୃଦୟ ବୁଦ୍ଧଶରୀର ବହିଲ । ପଶୁଘାତ ଅର୍ଥେ ଯଜ୍ଞ-
ବିଧିକି ଦୂଷିଲ ।୨୧। କଲ୍କି ରୂପେ କରେ ଧର ମହାଅଶିପତ୍ର ।
ଜ୍ୱଳନବଦନ ଅତି ଭୟଙ୍କର ଗାତ୍ର ।୨୩। ମ୍ଲେଚ୍ଛ ପାପୀ ଦୁରା-
ଚାରସମୂହ ସଂହାର । ଦର୍ଶାଇଲ ଛିଡଭାବ ଲୀଳାମାନ ଜାର ।୨୪।
ଏମନ୍ତରେ ଦଶବିଧ ଅବତାର ହୋଇ । ସଂସାର ପ୍ରତିପା-
ଳନେ ଧର୍ମ ରକ୍ଷା ପାଇ ।୨୫। କମଳାକୁଚମଣ୍ଡଳ ଅଶ୍ରୟ
ଯାହାର । ମନୋହର ବନମାଳା ଶୋଭିତ ହୃଦର ।୨୬।

ମଙ୍ଗଳଗୁର୍ଜ୍ଜରୀ ରାଗ ନିଃସାର ତାଳାଭ୍ୟାଂ ଗୀୟତେ ।
ରାଗସ୍ୟ ଲକ୍ଷଣଂ ।

ଶ୍ୟାମା ସୁକେଶୀ ମଳୟଦ୍ରୁମାଣାଂ ମୃଦୂଲ୍ଲସତ୍ପଲ୍ଲବତଳ୍ପଯାତା ।
ଶ୍ରୁତେଃ ସ୍ୱରାଣାଂ ଦଧତୀ ଦଶତ୍ୱଂ ତନ୍ୱୀମୁଖୀ ମଙ୍ଗଳଗୁର୍ଜ୍ଜରୀୟଂ ।

ଶ୍ରିତକମଳାକୁଚମଣ୍ଡଳ ଧୃତକୁଣ୍ଡଳ ।
କଳିତଲଳିତବନମାଳ, ଜୟ ଜୟ ଦେବ ହରେ । ଧ୍ରୁବ ।୧୭।

ଦିନମଣିମଣ୍ଡଳମଣ୍ଡନ ଭବଖଣ୍ଡନ ।
ମୁନିଜନମାନସହଂସ, ଜୟ ଜୟ ଦେବ ହରେ । ୧୮ ।

କାଳୀୟବିଷଧରଗଞ୍ଜନ ଜନରଞ୍ଜନ ।
ଯଦୁକୁଳନଳିନଦିନେଶ, ଜୟ ଜୟ ଦେବ ହରେ । ୧୯ ।

ମଧୁମୁରନରକ ବିନାଶନ ଗରୁଡ଼ାସନ ।
ସୁରକୁଳକେଳିନିଦାନ, ଜୟ ଜୟ ଦେବ ହରେ ।୨୦ ।

ଅମଳକମଳଦଳଲୋଚନ ଭବମୋଚନ ।
ତ୍ରିଭୁବନଭବନନିଦାନ, ଜୟ ଜୟ ଦେବ ହରେ । ୨୧ ।
ଜନକସୁତାକୃତଭୂଷଣ ଜିତଦୂଷଣ ।

---

ଦେବ ସୁରମୁନି କରୁଛନ୍ତି ଜୟକାର । ମଣିଗଣଶୋଭିତ କୁଣ୍ଡଳ ଶୁଭିତ ।୨୭। ଭବତମିର ନାଶନେ ଆଦିତ୍ୟ ପ୍ରକାଶ । ମୁନିଜନ-ମନମୀନ ସରୋବର ହଂସ ।୨୮। କାଳୀୟଭୁଜଙ୍ଗଦଳ ଜନମନ ରଞ୍ଜେ । ଯଦୁକୁଳକମଳତପନତେଜ ଗଞ୍ଜେ । ୨୯ । ନରକଦନୁଜ ମଧୁ ମୁର ଦର୍ପ ଗଞ୍ଜେ । ଦେବଙ୍କୁ ହରଷ ଦେଇ ଗରୁଡ଼ରେ ବଜେ । ୩୦ । ଅମଳକମଳନେତ୍ର ଭବଭୟ କାଟି । ତ୍ରିଭୁବନ ସ୍ଥାନ ଯାର ପୂର୍ଣ୍ଣ ବ୍ରହ୍ମରାଶି । ୩୧ । ଜନକଦୁହିତା ହୃଦେ କଲସି ମଣ୍ଡନ । ଜିଣିଲ ସମରେ ଦଶକଣ୍ଠ

ସମରଶମିତଦଶକଣ୍ଠ, ଜୟ ଜୟ ଦେବ ହରେ ।୨୨।
ଅଭିନବଜଳଧରସୁନ୍ଦର ଧୃତମନ୍ଦର ।
ଶ୍ରୀମୁଖଚନ୍ଦ୍ରଚକୋର, ଜୟ ଜୟ ଦେବ ହରେ ।୨୩।
ତବ ଚରଣେ ପ୍ରଣତା ବୟମିତି ଭାବୟ ।
କୁରୁ କୁଶଳଂ ପ୍ରଣତେଷୁ, ଜୟ ଜୟ ଦେବ ହରେ ।୨୪
ଶ୍ରୀ ଜୟଦେବକବେରିଦଂ କୁରୁତେ ମୁଦଂ ।
ମଙ୍ଗଳମୁଜ୍ଜ୍ୱଳଗୀତ, ଜୟ ଜୟ ଦେବ ହରେ ।୨୫।
ପଦ୍ମାପୟୋଧରତଟୀପରିରମ୍ଭଲଗ୍ନ-
କାଶ୍ମୀରମୁଦ୍ରିତମୁରୋ ମଧୁସୂଦନସ୍ୟ ।
ବ୍ୟକ୍ତାନୁରାଗମିବ ଖେଲଦନଙ୍ଗଖେଦ-
ସ୍ୱେଦାମ୍ବୁପୂରମନୁପୂରୟତୁ ପ୍ରିୟଂ ବଃ । ୨୬ ।

ଯେ ଦୂଷଣ । ୩୨ । ନବଘନ ରୁଚି ତନୁ ଗିରିବର ପାଣି । ରମାବଦନବିଧୁକୁ ଚକୋର କ ଜାଣି । ୩୩ ।

ପଦ୍ମାପୟୋଧର ତଟ ଆଲିଙ୍ଗନ କରି । ହୃଦୟ କୁଙ୍କୁମା-ଙ୍କିତେ ପ୍ରମୋଦ ମୁରାରି ।୩୪। ମନୁ ଅନୁରାଗ କଏ ହୋଇଛି ବାହାର । କାମଖେଦ କଲେବରେ ପୂରେ ସ୍ୱେଦଧାର । ୩୫ । କୋଟିମନ୍ମଥ ଗଞ୍ଜେ ଲାବଣ୍ୟବଦନ । ଚତୁର୍ଦ୍ଦଶଲୋକ ଆଲୋକତ ଯାର ଧ୍ୟାନ । ୩୬ । ସେ କୃଷ୍ଣ ଚରଣେ ମନ ଦିଅ ସାଧୁଜନ ! ହରିରସ ବିନୁ ଏହୁ ଦିବସ ଦୁର୍ଦ୍ଦିନ । ୩୭ । କୃଷ୍ଣକ୍ରୀଡାରସ ଏହୁ ଅତ୍ୟନ୍ତ ସୁରସ ! ଦ୍ୱିତୀୟ ଛାନ୍ଦର ବାଣୀ ହୋଏ ପରକାଶ । ୩୮ ! କହଇ ଧରଣୀଧର ଶ୍ରୀକୃଷ୍ଣର ଦାସ । କରିଥି କରୁଣା ନାଥ ଛେଦ ଭବପାଶ ।

ବସନ୍ତେ ବାସନ୍ତୀକୁସୁମସୁକୁମାରୈରବୟବୈ-
ର୍ଭ୍ରମନ୍ତୀଂ କାନ୍ତାରେ ବହୁବିହିତକୃଷ୍ଣାନୁସରଣାଂ ।
ଅମନ୍ଦଂ କନ୍ଦର୍ପଜ୍ୱରଜନିତଚିନ୍ତାକୁଳତୟା
ବଳଦ୍‌ବାଧାଂ ରାଧାଂ ସରସମିଦମୂଚେ ସହଚରୀ ।୨୭।

ବସନ୍ତରାଗଯତିତାଲାଭ୍ୟାଂ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ଶିଖଣ୍ଡିବର୍ହୋଚ୍ଚୟବଦ୍ଧଚୂଡ଼ଃ ପୁଷ୍ଣନ୍ ପିକଂ ଚୂତକଳାଙ୍କୁରେଣ ।
ଭ୍ରମନ୍ ମୁଦା କାମମନଙ୍ଗମୂର୍ତ୍ତିର୍ମତ୍ତୋ ମତଙ୍ଗୋ ହି ବସନ୍ତରାଗଃ ।

ଲଳିତଲବଙ୍ଗଲତାପରିଶୀଳନକୋମଳମଳୟସମୀରେ ।
ମଧୁକରନିକରକରମ୍ବିତକୋକିଳକୂଜିତକୁଞ୍ଜକୁଟୀରେ ।

---

ଟୀକାସ୍ଥାନ ।

ରାଗ ଗୁଜ୍ଜରୀ ।

ଶୁଣ ହେ ସୁଜନେ ଏଥିଁ ରସବଚନ । ମିଳଲେ ଋତୁରାଜନ ବସନ୍ତଦିନ । ୧ । କାନ୍ତବିଚ୍ଛେଦେ ଯୁବତି ଜ୍ୱରସମାନ । ଧଇର୍ଯ୍ୟବନକୁ କଏ ଦାବଦହନ । ୨ । ଏସନ ସମୟେ ତହୁଁ ରାଧାସୁନ୍ଦରୀ । କୃଷ୍ଣର ବିରହେ ତନୁ ମଦନେ ପାରି । ୪ । ଚେ-ତିଣ ସଦନ ଚୂଲେ ଘୋରବିପିନେ । ମାଧବକୁ ଅନୁସରି ଭ୍ରମ-ଇ ବନେ । ୪ । ଅତି ସୁକୁମାର କରଚରଣତଳ । ମାଧବୀ କୁସୁମଦଳ ତନୁ କୋମଳ । ୫ । ମନସିଜଜ୍ୱର ଚିନ୍ତାଆକୁଳଭ-ରେ । ନ ଜାଣଇ ଶ୍ରମ ପୀଡା ଚିତ୍ତବିକାରେ ।୬। ରାଧାର ଏସନ ଦୁଃଖ ଦେଖିଣ ଦୂତୀ । କହଇ ଅଗ୍ରତେ ମିଳ ବଚନ ପ୍ରୀତି ।୭। ଦେଖ ସଖି ଲବଣ୍ୟ ଏ ଲବଙ୍ଗଲତା । ନବୀନପଲ୍ଲବଦଳ

ବିହରତି ହରିରିହ ସରସବସନ୍ତେ—
ନୃତ୍ୟତି ଯୁବତିଜନେନ ସମଂ ସଖି ବିରହିଜନସ୍ୟ ଦୁରନ୍ତେ
। ଧ୍ରୁବ । ୨୮

ଉନ୍ମଦମଦନମନୋରଥପଥିକବଧୂଜନଜନିତବିଲାପେ ।
ଅଳିକୁଳସଙ୍କୁଳକୁସୁମସମୂହନିରାକୁଳବକୁଳକଳାପେ । ୨୯ ।
ମୃଗମଦସୌରଭରଭସବଶମ୍ବଦନବଦଳମାଳତମାଲେ ।
ଯୁବାଜନହୃଦୟବିଦାରଣମନସିଜନଖରୁଚିକିଂଶୁକଜାଲେ ।୩୦।
ମଦନମହୀପତିକନକଦଣ୍ଡରୁଚିକେଶରକୁସୁମବିକାଶେ ।
ମିଳିତଶିଲୀମୁଖପାଟଳିପଟଳକୃତସ୍ମରତୂଣବିଳାସେ । ୩୧ ।

---

କୋମଳରତା । ୮ । ଶୀତଳେ ବହଇ ମନ୍ଦ ମଳୟାନିଳ । ମଧୁକରମୃଙ୍ଗରବ ଶୁଭେ ଚହଳ । ୯ । କୋକିଳ ମୃଦୁ ମଧୁର ଲଳିତବାଣୀ । ପୂରତ କୁଞ୍ଜସଦନେ ମୋହନ ଜାଣି ।୧୦। ବିରହିଜନଙ୍କୁ କି କରିବ ଏ ଅନ୍ତ । କାନ୍ତର ବିରହେ ଦନୂଦନ ଦୁଃଖିତ ।୧୧। ଏମନ୍ତ ସମୟେ ଯାହା ସନ୍ନିଧେ ପତି । ହରଷେ ବଞ୍ଚିଲ ଧନ ଉତ୍ସୁକ ମତି ।୧୨। ଦେଖ ସଖି ଅଳିଯୂଥ କୁସୁମକୁଳେ । ମଧୁ ଆଶେ ବସିଛନ୍ତି ଚୂତବକୁଳେ ।୧୩। ମଦନେ ଉନ୍ମତ୍ତ ଅତି ପଥିକପ୍ରିୟା । ବିଳାପ କରନ୍ତି ଯହୁଁ ନଇଲେ ନାହା । ୧୪ । ଦେଖ ସଖି ନବଦଳ ତମାଳବନ । କସ୍ତୁରୀଲେପନ ପ୍ରାୟେ ଅତି ଶୋଭନ ।୧୫। ଯୁବାଜନହୃଦୟ ବିଦାରିବାପାଇଁ । ଫୁଟିଛି କିଂଶୁକ କାମ ନଖ କି ଏହି । ୧୬ । ନାଗେଶ୍ୱର କୁସୁମର ବିକଚ ଶୋଭା । ମଦନସ୍ୟ କନକଦଣ୍ଡର ପ୍ରଭା ।୧୭ ପାଟଳିକୁସୁମେ ବସେ ମଧୁପଶ୍ରେଣୀ । ମକରଧ୍ୱଜର ଶରଭାଜନ ଜାଣି ।୧୮। ଦେଖ ସଖି ବିକଶିତ କରୁଣାପୁଷ୍ପ । ଜଗତଜନଙ୍କୁ

ବିଗଳିତଲଜ୍ଜିତ ଜଗଦବଲୋକନତରୁଣକରୁଣକୃତହାସେ
ବିରହିନିକୃନ୍ତନକୁନ୍ତମୁଖାକୃତିକେତକଦନ୍ତୁରିତାଶେ । ୩୬ ।

ମାଧବିକାପରିମଳଲଳିତେ ନବମାଲତିଜାତିସୁଗନ୍ଧୌ ।
ମୁନିମାନସମପି ମୋହନକାରିଣି ତରୁଣାକାରଣବନ୍ଧୌ । ୩୭ ।

ସ୍ଫୁରଦତିମୁକ୍ତଲତାପରିରମ୍ଭଣମୁକୁଳିତପୁଲକିତଚୂତେ ।
ବୃନ୍ଦାବନବିପିନେ ପରିସରପରିଗତଯମୁନାଜଳପୂତେ । ୩୮ ।

ଶ୍ରୀଜୟଦେବଭଣିତମିଦମୁଦୟତି ହରିଚରଣସ୍ମୃତିସାରଂ ।
ସରସବସନ୍ତସମୟବନବର୍ଣ୍ଣନମନୁଗତମଦନବିକାରଂ । ୩୯ ।

---

ହସିବାର ସ୍ୱରୂପ ।୧୯। ଏମଧୁସମୟେ ଯୁବାଜନ ଯୁବତି । ଯହୁଁ ସେ ଛାଡିଲେ ଲଜ୍ଜା ଚଞ୍ଚଳମତି ।୨୦। ବିରହିଜନହୃଦୟେ ବାଧଇ କି ସେ । କାମକୁନ୍ତଧାର କି କେତକୀ ବିକାଶେ । ପରିମଳ ଲଳିତ ମାଧବୀ ପ୍ରକାଶ । ନବୀନ ମାଳତୀ ଜାତି ସୁଗନ୍ଧବାସ ।୨୧। ମୁନିଜନ-ମନ କି ଏ ମୋହ କରଇ । ପାଦପକୁଳକୁ ଅତି ପୀଡିତ ଏହି ।୨୩। ପ୍ରସରିତ ଲତା ଯେତେ ତରୁକୁ ବେଢ଼ି । ଆଲିଙ୍ଗନ କରେ କିଏ ନବଦେହ ଜଡ଼ି ।୨୪। ନାସ୍ୱ ପରିରମ୍ଭଣେ ବିହ୍ୱଳ ଯେମନ୍ତ । ମୁକୁଳିତ ବକୁଳ କି ପଲ୍ଲବେ ଚୂତ ।୨୫। ଅତିରମ୍ୟ ବୃନ୍ଦାବନ କାନନ ଏହି । ପବିତ୍ର ଯମୁନାଜଳ ଯାଉଛନ୍ତି ବହି ।୨୬। ଅତି ସରସବସନ୍ତ ଋତୁଅବତାର । ମଳୟସମୀର ଧୀର କାମସଖୀର ।୨୭ ମଦନେ ଉନ୍ମତ୍ତ ସର୍ବଜୀବ ତରଲ । ଏହି ଋଷିଶ୍ରୁତି ପାଳେ ଜୀବ ନିର୍ମଳ । ୨୮।ଦେଖ ସଖି ମଲ୍ଲିକା କୁସୁମ ଫୁଟିଲା । ଉତ୍ଫୁଲ୍ଲ ପର୍ଣ୍ଣ-ଗ ଲତାପୁଞ୍ଜେ ପଡିଲା । ୨୯। ପ୍ରକଟିତ ସୁବାସ ପୂରିତ କାନନ ।

ଦରବିଦଳିତମଲ୍ଲୀ ବଲ୍ଲି ଚଞ୍ଚତ୍ପରାଗ-
ପ୍ରକଟିତ ପଟବାସୈର୍ବାସୟନ୍ କାନନାନ ।
ଇହ ହି ଦହତି ଚେତଃ କେତକୀଗନ୍ଧବନ୍ଧୁଃ
ପ୍ରସରଦସମବାଣପ୍ରାଣବଦ୍ଗନ୍ଧବାହଃ । ୩୬ ।

ଅଦ୍ୟୋତ୍ସଙ୍ଗବସଦ୍ଭୁଜଙ୍ଗକବଲକ୍ଲେଶାଦବେଶାଚଲଂ
ପ୍ରାଲେୟଂ ପ୍ଲବମେତୁମିଚ୍ଛନୁସରନ୍ତି ଶ୍ରୀଖଣ୍ଡଶୈଳାନିଲଃ ।
କିଞ୍ଚସ୍ନିଗ୍ଧରସାଲମୌଳିମୁକୁଳାନ୍ୟାଲୋକ୍ୟ ହର୍ଷୋଦୟାଦୁନ୍ମୀ-
ଲନ୍ତି କୁହୂଃକୁହୂରିତି କଲୋତ୍ତାଳାଃ ପିକାନାଂ ଗିରଃ । ୩୭ ।

---

ବିରହିଜନଙ୍କ ଚିତ୍ତ କରେ ଦହନ । କେତକୀସୁଗନ୍ଧ ଯେନ ମୃ-
ଦୁପବନ । ପ୍ରସରନ୍ତି କାମଶର ଦହିବ ପ୍ରାଣ । ୩୧ । ଦେଖ
ସଖି ଚନ୍ଦନର କନ୍ଦରେ ଅହି । ବାସ କରି ତରୁକୋଟେ ଅଛଇ
ରହି । ୩୨ । ପବନଆହାର ସେହୁ କରେ ନିରତ । ବିଷଜ୍ୱାଳା
ପୀଡ଼ା ଅତି ପାଇ ମରୁତ । ୩୩ । ଦକ୍ଷିଣଦିଗରୁ ବହେ ମଳୟା-
ନିଳ । ମର୍ଦ୍ଦିବା ହିମରେ ଛଡ଼ାଇବ ଖରଳ । ୩୪ । ଏମନ୍ତ
ବହନ୍ତେ ଧୀରେ ମଳୟାନିଳ । ଅଙ୍କୁର ହୋଇଲେ ଅଗ୍ରେ
ଚୂତବକୁଳ । ୩୫ । ଦେଖିଣ ହରଷ ଅତି କୋକିଳକୁଳ ।
କୁହୂକୁହୂ ଶବଦରେ କରନ୍ତି ଖେଳ । ୩୬ । ଉନ୍ମତ୍ତଭରେଣ
ଅତି ଆଳାପବାଣୀ । ଶୁଣି ଚିତ୍ତ ଧରିବ କି ବିରହିପ୍ରାଣୀ । ୩୭ ।
ଏମନ୍ତ ସମୟେ ତୋତେ ଉପେକ୍ଷି ହରି । ବିହରଇ ସଙ୍ଗେ
ଘେନି ବରନାରୀ । ୩୮ ।

ଉନ୍ମୀଲନ୍ମଧୁଗନ୍ଧଲୁବ୍ଧମଧୁପବ୍ୟାଧୂତଚୂତାଙ୍କୁର-
କ୍ରୀଡତ୍କୋକିଳକାକଳୀକଳକଳୈରୁଦ୍ଗୀର୍ଣ୍ଣକର୍ଣ୍ଣଜ୍ୱରାଃ ।
ନୀୟନ୍ତେ ପଥିକୈଃ କଥଂ କଥମପି ଧ୍ୟାନାବଧାନକ୍ଷଣ
ପ୍ରାପ୍ତପ୍ରାଣସମାସମାଗମରସୋଲ୍ଲାସୈରମୀ ବାସରାଃ । ୩୮ ।

ଅନେକନାରୀପରିରମ୍ଭସମ୍ଭ୍ରମସ୍ଫୁରନ୍ମନୋହାରିବିଲାସଲାଳସଂ
ମୁରାରିମାରାଦୁପଦର୍ଶୟନ୍ତ୍ୟସୌ ସଖୀ ସମକ୍ଷଂ ପୁନରାହ ରାଧିକାଂ

---

ଉନ୍ନାଗର ମଧୁଗନ୍ଧଲୋଭେ ଭ୍ରମର । ମତ୍ତଭରେ ଧ୍ୱନି କରେ ଚୂତଶିଖର । ୩୯ । କ୍ରୀଡ଼ନ୍ତି କୋକିଳ କୋଳାହଳ ଶବଦ । ଶୁଣନ୍ତେ ବିରହି କର୍ଣ୍ଣେ ଜ୍ୱରବିଷାଦ । ୪୦ । ପଥିକ ବିଦେଶିଜନ ଅତି ବିଚ୍ଛନ୍ନ । ନିଜରାମା ପ୍ରିୟବାଣୀ ସ୍ମରନ୍ତି ମନ । ୪୧ । ଗତ କେଳିରସ ମନେ କରିଣ ଧ୍ୟାନ । ଅତି-ଶୟ ଦୁଃଖେ ନେଲେ ରଜନୀ ଦିନ ।୪୨। ଅବଧି ସ୍ମରି କାନ୍ତ ଆକୁଳମତି । ପ୍ରବେଶ ହୋଇଲେ ପ୍ରାଣସମାନ ପତି । ୪୩ । ଅତି ହରଷିତ ବାମା ଉଲ୍ଲାସଚିତ୍ତ । ନାନାରସେ ଦିନ ନେଲେ କାମିନୀ-କାନ୍ତ । ୪୪ । ଏସନସମୟେ ସଖି ଦେବ ମୁରାରି । ଆଲିଙ୍ଗନ ସେ ଅନେକ ଯୁବତି କରି । ୪୫ । ମନୋହାରି-ଜନ କୃଷ୍ଣକେଳିଲାଳସେ । ଉତ୍ସୁକ ହୋଇଅଛନ୍ତି ଅତି ହରଷେ । ୪୬ । ଯେସନରେ କ୍ରୀଡ଼ା କରୁଛନ୍ତି ମାଧବ । ଦେଖିଲାକ ସହଚରୀ ତେସନ ଭାବ । ୪୭ । ପୁଣପୁଣ କହେ ବାମା ସଖୀଅଗ୍ରତ । ଶୁଣ ତୁ ସଜନି ଏକ କରିଣ ଚିତ୍ତ । ୪୮ ।

ରାମକରୀରାଗଯତିତାଲାଭ୍ୟାଂ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ସ୍ୱର୍ଣ୍ଣପ୍ରଭା ସ୍ୱମ୍ବରଭୂଷଣା ଚ ନୀଲଂ ନରେନ୍ଦ୍ରଂ ବପୁଷା ବହନ୍ତୀ ।
କାନ୍ତେ ପ୍ରଦୋଷାନ୍ତମଧିଶ୍ରିତେଽପି ମାନୋନ୍ନତା ରାମକରୀପ୍ରଦିଷ୍ଟା ।

ଚନ୍ଦନଚର୍ଚ୍ଚିତନୀଲକଲେବରପୀତବସନବନମାଲୀ
କେଳିଚଳନ୍ମଣିକୁଣ୍ଡଳମଣ୍ଡିତଗଣ୍ଡଯୁଗସ୍ମିତଶାଲୀ
ହରିରିହ ମୁଗ୍ଧବଧୂନିକରେ
ବିଲାସିନି ବିଲସତି କେଳିପରେ । ୪୦ । ଧ୍ରୁବଂ ।

ପୀନପୟୋଧରଭାରଭରେଣ ହରିଂ ପରିରଭ୍ୟ ସରାଗଂ ।
ଗୋପବଧୂରନୁଗାୟତି କାଚିଦୁଦଞ୍ଚିତପଞ୍ଚମରାଗଂ । ୪୧ ।
କାପି ବିଲାସବିଲୋଲବିଲୋଚନଖେଳନଜନିତମନୋଜଂ ।
ଧ୍ୟାୟତି ମୁଗ୍ଧବଧୂରଧିକଂ ମଧୁସୂଦନବଦନସରୋଜଂ । ୪୨ ।

---

ନୀଳକଳେବରେ ଶୋଭେ ହରିଚନ୍ଦନ । କଟିତଟେ ପୀତପଟ୍ଟ ପରିଧାପନ । ୪୯ । ମଣ୍ଡିତ ଗଣ୍ଡଯୁଗଳେ ମଣିକୁଣ୍ଡଳ । ଲୀଳାଏ ଟାଳନ୍ତେ ଶୋଭେ ମୁଖମଣ୍ଡଳ । ୫୦ । ବିଳାସିନୀବୃନ୍ଦ ମଧ୍ୟେ କରନ୍ତି କେଳି । ବାବନ୍ତି ସୁସ୍ୱରେ ବେଣୁ ଶ୍ରୀବନମାଳୀ । ୫୧ । କେବଣ କାମିନୀ କୁଚଭରେଣ ଭାରି । ଆଲିଙ୍ଗନ କରିବାକୁ ସରାଗ କରି । ୫୨ । କେବଣ ଗୋପିନୀ ଗାଏ ପଞ୍ଚମସ୍ୱରେ । କର ଦେଇ କହୁ ଲୋଡ଼େ ଶୁଣ୍ଡମୂଳରେ । ୫୩ । କେବଣ ବିଳାସିନୀ ବିଲୋଲଲୋଚନ । ଡାକିଣ ଚାହାନ୍ତେ ଜ ଏ ଉଦେ ମଦନ । ୫୪ । କୃଷ୍ଣମୁଖସରୋଜ ଧ୍ୟାୟନ୍ତି ତରୁଣୀ । ହରଷ ଲାବଣ୍ୟ କୋଟିମଦନ ଜିଣି । ୫୫ । କେବଣ କାମିନୀ, କୃଷ୍ଣ-କପୋଳତଳେ । କର ଦେଇ କହୁ ଲୋଡ଼େ ଶ୍ରବଣମୂଳେ ।୫୬।

କାପି କପୋଲତଳେ ମିଳିତା ଲପିତୁଂ କମପି ଶ୍ରୁତିମୂଲେ ।
ଚାରୁ ଚୁଚୁମ୍ବ ନିତମ୍ବବତୀ ଦୟିତଂ ପୁଲକୈରନୁକୂଲେ ।୪୩।
କେଳିକଳାକୁତୁକେନ ଚ କାଚିଦମୁଂ ଯମୁନାଜଳକୂଲେ ।
ମଞ୍ଜୁଳବଞ୍ଜୁଳକୁଞ୍ଜଗତଂ ବିଚକର୍ଷ କରେଣ ଦୁକୂଲେ ।୪୪।
କରତଳତାଳତରଳବଳୟାବଳିକଳିତକଳସ୍ୱନବଂଶେ ।
ରାସରସେ ସହ ନୃତ୍ୟପରା ହରିଣା ଯୁବତିଃ ପ୍ରଶଶଂସେ ।୪୫।
ଶ୍ଳିଷ୍ୟତି କାମପି ଚୁମ୍ବତି କାମପି କାମପି ରମୟତି ରାମାଂ ।
ପଶ୍ୟତି ସସ୍ମିତଚାରୁପରାମପରାମନୁଗଚ୍ଛତି ବାମାଂ ।୪୬।

---

ଦେଖି ଚାରୁ ଗଣ୍ଡସ୍ଥଳ ପୁଲକ ହୋଇ । ଚୁମ୍ବନ ଦେଲାକ କଛୁ ନ ପାରେ କହି ।୪୭। ରମଣୀ ଚୁମ୍ବନ୍ତେ କୃଷ୍ଣ ଚଞ୍ଚଳ ମନ । ପୁଲକ ହୋଇଲା ଲୋମ ସକଳତନୁ । ୪୮ । କେଳିରସ ଯମୁନାକୂଳରେ ବିପିନ । କେଉଁ ବାମା ଓଟାରେ କୃଷ୍ଣର ବସନ । ୪୯ । ନିକୁଞ୍ଜ ଗହନବନଭିତରେ ଯିବା । ବିବିଧ ପ୍ରକାରେ ନାନା କ୍ରୀଡ଼ା କରିବା । ୬୦ । ସକଳମଣ୍ଡଳୀ ବାମାମଧ୍ୟେ ମୁରାରି । ରାସକ୍ରୀଡ଼ାରସେ ନୃତ୍ୟ କରନ୍ତି ହରି ।୬୧। କରତଳ ଶବଦରେ କଙ୍କିଣୀ ଧ୍ୱନି । ମଞ୍ଜୁ ବେଣୁସ୍ୱରେ ତାନ ଏକଇ ଜାଣି । ୬୨ । ପ୍ରଶଂସନ୍ତି ଯୁବତି କୃଷ୍ଣଙ୍କୁ ଅନାଇ । ବିବିଧ ପ୍ରକାରେ ନାନା ବଚନ କହି । ୬୩ । କେବଣ ନାରୀକି କୃଷ୍ଣ ଅପାଙ୍ଗେ ଚାହିଁ । ତାହାକୁ ନିବିଡ଼େ ଆଲିଙ୍ଗନ କରଇ ॥ ତାହାର ସରୋଜମୁଖେ ଦେଇ ଚୁମ୍ବନ । କେଉଁ ଯୁବତିକି କହେ ହାସ୍ୟ ବଚନ । ୬୫ । କେବଣ ନାରୀକି କୃଷ୍ଣ ରମଣ କରି ; ସକଳରମଣୀ ଉସ୍ତାଇଲା ଏପରି । ୬୬ ।

ଶ୍ରୀ ଜୟଦେବଭଣିତମିଦମଭୁତକେଶବକେଳିରହସ୍ୟଂ ।
ବୃନ୍ଦାବନବିପିନବକୋଦକଲାବଳତଂ ବଡନୋଭୁଶୁଭାନ ଯଶସ୍ୟଂ ।୪୬
ବିଶେଷାମନୁରଞ୍ଜନେନ ଜନୟନ୍ନାନନ୍ଦମିନ୍ଦୀବର-
ଶ୍ରେଣୀଶ୍ୟାମଳକୋମଳୈରୁପନୟନ୍ନଙ୍ଗୈରନଙ୍ଗୋତ୍ସବ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଭିରଭିତଃ ପ୍ରତ୍ୟଙ୍ଗମାଲିଙ୍ଗିତଃ ।
ଶୃଙ୍ଗାରଃ ସଖି ମୂର୍ତ୍ତିମାନିବ ମଧୌ ମୁଗ୍ଧୋ ହରିଃ କ୍ରୀଡ଼ତି ।୪୮
ରାସୋଲ୍ଲାସଭରେଣ ବିଭ୍ରମଭୃତାମାଭୀରବାମଭ୍ରୁବା
ମଭ୍ୟର୍ଣ୍ଣେ ପରିରଭ୍ୟ ନିର୍ଭରମୁରଃ ପ୍ରେମାନ୍ଧୟା ରାଧୟା ।
ସାଧୁ ତ୍ୱଦ୍‌ବଦନଂ ସୁଧାମୟମିତି ବ୍ୟାହୃତ୍ୟ ଗୀତସ୍ତୁତି-
ବ୍ୟାଜାଦୁଦ୍‌ଭଟଚୁମ୍ବିତଃସ୍ମିତମନୋହାରୀ ହରିଃ ପାତୁ ବଃ ।୪୯
ଇତି ଶ୍ରୀ ଗୀତଗୋବିନ୍ଦମହାକାବ୍ୟେ ସାମୋଦଦାମୋଦରୋ
ନାମ ପ୍ରଥମଃ ସର୍ଗଃ । ୧ ।

---

ବାମା ମନୋରଞ୍ଜନେ ଅଦ୍ଭୁତ ପ୍ରକାଶ । ଶ୍ୟାମଳ କୋମଳତନୁ ମଦନ ପ୍ରବେଶ ।୬୭। ସ୍ୱଚ୍ଛନ୍ଦେନିର୍ଭରେ ଘେନ ଯୁବଯୂଥ । ପୁନଃ ପୁନ ଆଲିଙ୍ଗନ ମଦନେ ମତ୍ତ । ୬୮ । ମୂର୍ତ୍ତିମନ୍ତ ହୋଇଅଛି ଶୃଙ୍ଗାରକଳା । ମଧୁମାସେ କାମୋତ୍ସବ କୃଷ୍ଣର ଲୀଳା । ୬୯ । ଶୁଣ ହେ ସୁଜନେ ମନ କର ଆନନ୍ଦ । କୃଷ୍ଣକ୍ରୀଡ଼ାରସ ଏହୁ ଭୃଙ୍ଗାୟୁ ଛାନ୍ଦ । ୭୦ । ବସନ୍ତବର୍ଣ୍ଣିନା ଏହୁ ରହସ୍ୟ ଲୀଳା । ରାଧିକା ଅଗ୍ରତେ ସହଚରୀ କହିଲା । ୭୧ । ଶ୍ରୀହରିଚରଣପଦ୍ମ-ପରାଗ ଆଶେ । ଧରଣୀଧରର ମନ ମଧୁପ ବସେ । ୭୨ ।

---

द्वितीयः सर्गः ।

ବିହରତି ବନେ ରାଧା ସାଧାରଣପ୍ରଣୟେ ହରୌ
ବିଗଳିତନିଜୋତ୍କର୍ଷାଦୀର୍ଷାବଶେନ ଗତାନ୍ୟତଃ ।
କ୍ୱଚିଦପି ଲତାକୁଞ୍ଜେ ଗୁଞ୍ଜନ୍ମଧୁବ୍ରତମଣ୍ଡଳୀ-
ମୁଖରଶିଖରେ ଲୀନା ଦୀନାପ୍ୟୁବାଚ ରହଃ ସଖୀଂ । ୧ ।

ଗୁର୍ଜ୍ଜରୀରାଗ-ଯତିତାଲାଭ୍ୟାଂ ଗୀୟତେ ।

ସଞ୍ଚରଦଧରସୁଧାମଧୁରଧ୍ୱନିମୁଖରିତମୋହନବଂଶଂ
ଚଳିତଦୃଗଞ୍ଚଳଚଞ୍ଚଳମୌଳିକପୋଳବିଲୋଲବତଂସଂ ।

ରାସେ । ହରିମିହ ବିହିତବିଳାସଂ, ସ୍ମରତି ମନୋ ମମ କୃତ-
ପରିହାସଂ । ୨ । ଧ୍ରୁବ ।

---

ଚତୁର୍ଥ ଛାନ୍ଦ ।

ଅଷାଢ଼ଶୁକ୍ଳ ବାଣୀ ।

ଶୁଣ ସୁଜନେ ହୋଇ ସାବଧାନ । କହିଲି ସଂଜ୍ଞା ଯେତେ ବଚନ । ଶୁଣି ରାଧିକା ଅତି ତାପ ମନେ । ବିହରଇ ସେ ଘୋରବିପିନେ ଅତି ଘନ୍ନରାଗ । ଧରିଅଛି ତାର ହୃଦୟୁରାଗ ।୧। ଭ୍ରମନ୍ତେ ତନୁ ନିଜତେଜ ନାଶ । କେବଣହିଁ କୁଞ୍ଜଲତା ପ୍ରଦେଶ । ଭ୍ରମରମଣ୍ଡଳୀ ତହିଁ ଉପରେ । ମୁଖରିବଧ୍ୱନି କାନନେ ଫୁରେ । ତା ଦେଖି ସୁମୁଖୀ । ଅତି ଦୁଃଖେ କହେ ଶୁଣ ଗୋ ସଖି ।୨। ଦେଖ ସଖି ହରି ଏଡ଼େ ନିର୍ଦ୍ଦୟ । କ୍ରୀଡ଼ଇ ଯେବେ ଗୋପକାଙ୍ଗନୟ । ମୋର ବିସ୍ମିଲେ ରାସକେଳି ରସ । କରଇ ନାନା ପ୍ରକାରେ ବିଳାସ । ନାହିଁ ମୋର ଆଶ । ମୋ ମନ ସୁମରଇ କ୍ରୀଡ଼ାରସ । ୩ । ଅମୀୟ ଅଧରେ ବେଣୁ ମଧୁର । ଚଳିତ ଲୋଚନ ଚଞ୍ଚଳ ଶିର ।

ଚନ୍ଦ୍ରକଚାରୁମୟୂରଶିଖଣ୍ଡକମଣ୍ଡଳବଳୟିତକେଶଂ ।
ପ୍ରଚୁରପୁରନ୍ଦରଧନୁରନୁରଞ୍ଜିତମେଦୁରମୁଦିରସୁବେଶଂ । ୩ ।
ଗୋପକଦମ୍ବନିତମ୍ବବତୀମୁଖଚୁମ୍ବନଲମ୍ଭିତଲୋଭଂ ।
ବନ୍ଧୁଜୀବମଧୁରାଧରପଲ୍ଲବମୁଲ୍ଲସିତସ୍ମିତଶୋଭଂ । ୪ ।
ବିପୁଳପୁଳକଭୁଜପଲ୍ଲବବଳୟିତବଲ୍ଲବଯୁବତିସହସ୍ରଂ ।
କରଚରଣୋରସି ମଣିଗଣଭୂଷଣକିରଣବିଭିନ୍ନତମିସ୍ରଂ । ୫ ।
ଜଳଦପଟଳଚଳଦିନ୍ଦୁବିନିନ୍ଦକଚନ୍ଦନତିଳକଲଲାଟଂ ।
ପୀନପୟୋଧରପରିସରମର୍ଦ୍ଦନନିର୍ଦ୍ଦୟହୃଦୟକପାଟଂ । ୬ ।

---

କପୋଳେ ଅବତଂସ ପୁଷ୍ପମାନ । ଅମୋଳ ହୁଅନ୍ତେ ଅତି ଶୋଭନ । ତା ପ୍ରସନ୍ନମୁଖ । ଦେଖି କାମିନୀ ହରୁଛନ୍ତି ଦୁଃଖ ।୩। ମୟୂରପୁଚ୍ଛର ଚନ୍ଦ୍ରକାମାଳ । କୁଟିଳ କେଶେ ବେଢ଼ାଇ ମଣ୍ଡଳୀ। ଯେସନେ ନୀଳଜଳଦର ମଧ୍ୟେ । ଇନ୍ଦ୍ରଚାପ କି ସେ ହୋଇଛି ଉଦେ । ତା ମୋହନ ଚୂଳ । ଗୃହୀଁଲେ ତରୁଣୀ ଚିତ୍ତ ଆକୁଳ ।୪। ଗୋପନାୟିକା ନିତମ୍ବିନୀବୃନ୍ଦ । ବଦନ ବିକଶିତ ଅରବିନ୍ଦ । ଚୁମ୍ବନ ଦେବାକୁ ଲୋଭେ ସୁନ୍ଦରୀ । ବନ୍ଧୁଜୀ ମଧୁରାଧର ମୁରାରୀ । ବନ୍ଧୁଳୀର ଆଭା । ଉଲ୍ଲସିତ ଦରହାସରେ ଶୋଭା । ୬ । ସହସ୍ରେ ବ୍ରଜନାରୀ କରେ କୋଳ । ପୁଲକିତ ଅତି ଭୁଜଯୁଗଳ । କରେ କଙ୍କଣ ହୃଦରେ ଭୂଷଣ । ପାଦେ ନୂପୁର ନାନା ମଣିଗଣ । ଏ ଜ୍ୟୋତି ପ୍ରକାଶ । କୁଞ୍ଜସଦନେ ଅନ୍ଧକାର ନାଶ ।୨। ଚଳନ୍ତେ ଅଶିତ ଘନପଟଳ । ଯେସନେ ପ୍ରକାଶ ଶଶିମଣ୍ଡଳ । ଚନ୍ଦନ-ବିନ୍ଦୁ ତିଳକ ତେସନ । ହରି ଭାଳପଟେ ଅତି ଶୋଭନ । ଘନ-

ମଣିମୟମକରମନୋହରକୁଣ୍ଡଳମଣ୍ଡିତଗଣ୍ଡମୁଦାରଂ ।
ପୀତବସନମନୁଗତମୁନିମନୁଜସୁରାସୁର ବରପରିବାରଂ । ୭।
ବିଶଦକଦମ୍ବତଳେ ମିଳିତଂ କଳିକଳୁଷଭୟଂ ଶମୟନ୍ତଂ ।
ମାମପି କିମପି ତରଙ୍ଗଦନଙ୍ଗଦୃଶା ମନସା ରମୟନ୍ତଂ । ୮ ।
ଶ୍ରୀଜୟଦେବଭଣିତମତିସୁନ୍ଦରମୋହନମଧୁରିପୁରୂପଂ ।
ହରିଚରଣସ୍ମରଣଂ ପ୍ରତି ସଂପ୍ରତି ପୁଣ୍ୟବତାମନୁରୂପଂ । ୯ ।
ଗଣୟତି ଗୁଣଗ୍ରାମଂ ଭ୍ରାମଂ ଭ୍ରମାଦପି ନେହତେ
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।
ଯୁବତିଷୁ ବଲତ୍ତୃଷ୍ଣେ କୃଷ୍ଣେ ବିହାରିଣୀ ମାଂ ବିନା
ପୁନରପି ମନୋ ବାମଂ କାମଂ କରୋତି କରୋମି କିଂ । ୧୦ ।

---

କୁଚଭାର । ମର୍ଦ୍ଦନେ ହୃଦୟ ନିର୍ଦ୍ଦୟ ଯାର ।୮। ମନୋହର ମଣି-ମୟକୁଣ୍ଡଳ । ମଣ୍ଡିତ ଗୋବିନ୍ଦ ଗଣ୍ଡଯୁଗଳ । କଟିତଟେ ଶୋହେ ପୀତଅମ୍ବର । ସୁର ଅସୁର ଯାର ପରିବାର । ମୁନିଜନ ଆଦି । ଇତର ମନୁଷ୍ୟ କିଏ ତ୍ରସିଛି ।୯। ଶ୍ବେତକଦମ୍ବ ତଳେ ଜନାର୍ଦ୍ଦନ । କଳିକଳୁଷ କରେ ବିନାଶନ । ମୋହର ମନ ତାହାଙ୍କହିଁ ରମେ । ମଦନେ ତରଳ ଲୋଚନ ଗମେ । ଦେଖିବାକୁ ଆଶ । ଯେତେ ଦୁଃଖ ହେଲେ ନୋହେ ନିରାଶ ।୧୦। ଶ୍ରୀମନ୍ତ ଜୟଦେବ କବି ଭଣେ । କୃଷ୍ଣମୋହନମୂରତି ନିର୍ଗୁଣେ । ନାଗେନ୍ଦ୍ର ମୁନିଇନ୍ଦ୍ର ସୁଜ୍ଞ ସୁଖ । ଯେଉଁ ଚରଣ ଚିନ୍ତି ତେଜେ ଦୁଃଖ । ସେ ମୂର୍ତ୍ତିଙ୍କ ସାର । ଭକ୍ତ-ଦୁରିତଚ୍ଛେଦନ କୁଠାର ।୧୧। କୃଷ୍ଣର ଗୁଣ ଗୁଣି ମୋର ଦେହ । ଭ୍ରମ ହୋଇ ଚିତ୍ତ କରୁଛି ମୋହ । ଯେତେ ଦୋଷ

ଗୁଣ୍ତ୍ରକଶ୍ରିରାଗେଣ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ଉଚ୍ଚୋଚ୍ଚସ୍ତୁକାକାନ୍ତପଥପ୍ରତୀକ୍ଷାମାଲାପସ୍ତୁତ୍ତ ମୃଦୁପୁଷ୍ପତଳେ୍ପ ।

ଧୃତସ୍ମିତ ପ୍ରେରିତ ଦୃଷ୍ଟିବର୍ତ୍ତ ଶ୍ୟାମତନ୍ଗୁର୍ଣ୍ଡ୍ରକଶ୍ରି ପ୍ରଦିଷ୍ଟା ।

ନିଭୃତନିକୁଞ୍ଜଗୃହଂ ଗତୟା ନିଶି ରହସି ନିଲୀୟବସନ୍ତଂ ।

ଚକିତବିଲୋକିତସକଳଦିଶା ରତିରଭସରସେନ ହସନ୍ତଂ ।

ସଖି ହେ, କେଶିମଥନମୁଦାରଂ ।

ରମୟ ମୟା ସହ ମଦନମନୋରଥ ଭାବିତୟା ସବିକାରଂ ।

ଧ୍ରୁବ । ୧ ।

ପ୍ରଥମସମାଗମଲଜ୍ଜିତୟା ପଟୁ ଚାଟୁଶତୈରନୁକୂଳଂ ।

ମୃଦୁମଧୁରସ୍ମିତଭାଷିତୟା ଶିଥିଲୀକୃତଜଘନଦୁକୂଳଂ । ୨ ।

---

କଲେ ମୁ ନ ଚେତଇ । ପୁନରପି ଚିତ୍ତ ତାହାର ଚହିଁ । ସେ ନନ୍ଦସୁ ହରି । ମୋ ସଙ୍ଗେ କ୍ରୀଡ଼ା କରେ ବ୍ରଜନାଥ । ୧ । ଶୁଣ ସଜନି ବଚନ ମୋହର । କେଶି-ରିପୁ ଭୁଲେ ସଂଯୋଗ କର । କାମକାମନା ପୂର୍ଣ୍ଣ କର ମୋର । ବିବିଧପ୍ରକାରେ ଯେତେ ଶୃଙ୍ଗାର । ଶୁଣ ପ୍ରାଣସଖି । ଯେମନ୍ତ ଭାବେ କେଳି କରିବଇଁ । ନିର୍ଜନ ନିକୁଞ୍ଜସଦନେ ମୁହିଁ । ନିଶି ଅନ୍ଧକାରେ ଥିବଇ ଚହିଁ । ନ ଦେଖି ଚକିତ ହୋଇବେ ହରି । ଗୃହିଁବେ ଦଗେ ଦଗେ ଅନୁସରି । ପଶିବେ ସେ ବନ । ହସିବେ ମୋର ପାଇଣ ଦର୍ଶନ ।୧। ପ୍ରଥମେ ତାର ମୋହର ସଙ୍ଗତ । ଲଜ୍ଜା-ଭରେ ମୋ ତନୁ ସଙ୍କୁଚିତ । ବିବିଧପ୍ରକାରେ ଷ୍ଟୁତି ଯେତେକ । କହିବେ ମୃଦୁ ମଧୁର ଅନେକ । ମୋ ହାସ୍ୟବଚନ । ଫେଡ଼ିବେ ଘନଜଘନୁ ବସନ ।୨। ନବୀନପଲ୍ଲବ ଶଯ୍ୟା ଉପରେ । କୃଷ୍ଣଙ୍କୁ

କିଶଲୟଶୟନନିବେଶିତୟା ଚିରମୁରସି ମମୈବ ଶୟାନଂ ।
କୃତପରିରମ୍ଭଣଚୁମ୍ବନୟା ପରିରଭ୍ୟ କୃତାଧରପାନଂ ।୧୩।
ଅଲସନିମୀଲିତଲୋଚନୟା ପୁଲକାବଳିଲଳିତକପୋଲଂ ।
ଶ୍ରମଜଳସକଳକଳେବରୟା ବରମଦନମଦାଦତିଲୋଲଂ ।୧୪।
କୋକିଳକଳରବକୂଜିତୟା ଜିତମନସିଜତନ୍ତ୍ରବିଚାରଂ ।
ଶ୍ଳଥକୁସୁମାକୁଳକୁନ୍ତଳୟା ନଖଲିଖିତଘନସ୍ତନଭାରଂ ।୧୫।
ଚରଣରଣିତମଣିନୂପୁରୟା ପରିପୂରିତସୁରତବିତାନଂ ।
ମୁଖରବିଶୃଙ୍ଖଳମେଖଳୟା ସକଚଗ୍ରହଚୁମ୍ବନଦାନଂ ।୧୬।
ରତିସୁଖସମୟରସାଳସୟା ଦରମୁକୁଳିତନୟନସରୋଜଂ ।
ନିଃସହନିପତିତତନୁଲତୟା ମଧୁସୂଦନମୁଦିତମନୋଜଂ ।୧୭।

---

ଅଣି ଶୁଆଇବ ତହିଁରେ । କରିବ ଗାଢ଼ତରେ ଆଲିଙ୍ଗନ । ନଳିନବଦନେ ଦେବ ଚୁମ୍ବନ । ଉତ୍ସୁକରେ ମନ । ଅମୀୟ ଅଧରୁ କରିବ ପାନ । ୧୬ । ମଦନମତ୍ତତରେ ଅତି ଭୋଳ । ହୋଇଥିବ ମୁହିଁ ଅତି ଚଞ୍ଚଳ । ସକଳ କଳେବର ଶ୍ରମଜଳେ । ପୁଲକିତ ଘନ କପୋଳ ତଳେ । ଅଳସେ ତ ଘେନି । ବୁଜି ହୋଇ-ଥିବ ନୟନ ବେନି । ୧୭ । କାମଶାସ୍ତ୍ରେ ମୋର ସୁରସବାଣୀ । କୋକିଳ ମୃଦୁରବ-ଭାବ ଜାଣି । ଫିଟିବ କୁନ୍ତଳ କବରୀଭାର । ଖସି କୁସୁମ ପଡିବ ଶଯ୍ୟାର । ଘନକୁଚ ବେନି । ଲେଖିବେ ହରି. ତୀକ୍ଷ୍ଣନଖେ ଘେନି । ୧୮ । କଟିରେ କଟିମେଖଳା ମୋହର । ପାଦେରେ ରୁଣଝୁଣତ ନୂପୁର । କ୍ରୀଡାକାଳେ ଏନ୍ତୁ କରିବେ ବାଦ । ପୂରିବ କେଳିସଦନେ ଶବଦ । ସେ ଜଗଜୀବନ । କେଶ ଧରି ମୁଖେ ଦେବେ ଚୁମ୍ବନ । ୧୯ । ରତିସୁଖକାଳେ ଚୂତମୁକୁଳ । ମୁହିଁ ନ ପାରି ଲୋଚନ କମଳ ।

ଶ୍ରୀଜୟଦେବଭଣିତମିଦମତିଶୟମଧୁରିପୁନିଧୁବନଶୀଲଂ ।
ସୁଖମୁତ୍କଣ୍ଠିତଗୋପବଧୂକଥିତଂ ବିତନୋତୁ ସଲୀଳଂ ।୧୯।

ହସ୍ତସ୍ରସ୍ତବିଲାସବଂଶମନୃଜୁଭ୍ରୂବଲ୍ଲୀମଦ୍‌ବଲ୍ଲବୀ-
ବୃନ୍ଦୋତ୍ସାରଦୃଗନ୍ତବୀକ୍ଷିତମତିସ୍ୱେଦାର୍ଦ୍ରଗଣ୍ଡସ୍ଥଳଂ ।
ମାମୁଦ୍‌ବୀକ୍ଷ ବିଲକ୍ଷିତସ୍ମିତସୁଧାମୁଗ୍ଧାନନଂ କାନନେ
ଗୋବିନ୍ଦଂ ବ୍ରଜସୁନ୍ଦରୀଗଣବୃତଂ ପଶ୍ୟାମି ହୃଷ୍ୟାମି ଚ ।୧୯।

ଦୁରାଲୋକସ୍ତୋକସ୍ତବକନବକାଶୋକଲତିକା-
ବିକାଶଃ କାସାରୋପବନପବନୋଽପି ବ୍ୟଥୟତି ।

---

ନିସ୍ତାଣ ହୋଇଣ ଶଯ୍ୟା ଉପରେ । ଶୋଇଥିବି ମୁଁ ଅଲସିତ-
ଭରେ । ସେ ମଧୁସୂଦନ । କୋଟିମଦନ ପ୍ରସନ୍ନବଦନ । ୨୦ ।
ଶୁଣ ସଖି ଯାହା କହିଲି ମୁହିଁ । ହରି ତୁଲେ ଭେଟ କର
ଗୋ ସହି । କାମେ ଉତ୍କଣ୍ଠିତ ହୋଇ ତରୁଣୀ । ଭ୍ରମଇ ଲତା-
କୁଞ୍ଜ ଗୃହ ଜାଣି । କେତେହେଁକ ଦୂରେ । ଦେଖିଲା ହରିଙ୍କି
କାମବୃନ୍ଦରେ । ୨୧ । ଜୟଦେବ କବି ଏ ଗୀତ ଭଣି ।
ବାସୁଦେବକେଳିରସ ବଖାଣି । ଉତ୍କଣ୍ଠେ ରାଧିକା ସଖିକି କହି ।
ଜନଲୋକଙ୍କୁ ଏହି ସୁଧା ହୋଇ । ହେ ସକଳଜନ । ତୁମ୍ଭ-
ମାନଙ୍କ ଶୁଭ ହେଉ ପୁଣ । ୨୨ । ଶ୍ରୀକୃଷ୍ଣ ଯହୁଁ ଦେଖିଲେ
ରାଧାଙ୍କୁ । ସଲଜ୍ଜେ ଅତି ସଙ୍କୋଚ ମନକୁ । ହସ୍ତରୁ ମୋହନ-
ବେଣୁ ପଡ଼ିଲା । ଗଣ୍ଡଯୁଗଳ ଝାଳରେ ବୁଡ଼ିଲା । ସ୍ମିତ
ଭ୍ରୂଲତା । ଉତ୍ସାହ ଲଭିଲା ଗୋପବନିତା । ୨୩ । ହରଷ
ହୋଇ ସେ ରାଧା ସୁନ୍ଦରୀ । କହଇ ଆସି ଶୁଣ ସହଚରୀ ।
ବେଢ଼ି ଛନ୍ତି ବ୍ରଜଯୁବତିଗଣେ । ଦେଖିଲି ହରି କ୍ରୀଡ଼ା କରେ

ଅପି ଭ୍ରମଦ୍ଭୃଙ୍ଗୀରଣିତରମଣୀୟାନ ମୁକୁଳ-
ପ୍ରସୂତିଶ୍ଚୂତାନାଂ ସଖି ଶିଖରିଣୀୟଂ ସୁଖୟତି । ୨୦ ।
ସାକୂତସ୍ମିତମାକୁଳାକୁଳଗଳଦ୍ଧମ୍ମିଲ୍ଲମୁଲ୍ଲାସିତ-
ଭ୍ରୂବଲ୍ଲୀକମଲୀକଦର୍ଶିତଭୁଜାମୂଳାର୍ଦ୍ଧଦୃଷ୍ଟସ୍ତନଂ ।
ଗୋପୀନାଂ ନିଭୃତଂ ନିରୀକ୍ଷ୍ୟ ଗମିତାକାଂକ୍ଷଶ୍ଚିରଂ ଚିନ୍ତୟନ୍
ଅନ୍ତର୍ମୁଗ୍ଧମନୋହରଂ ହରତୁ ବଃ କ୍ଲେଶ ନବଃ କେଶବଃ । ୨୧

ଇତି ଶ୍ରୀଗୀତଗୋବିନ୍ଦେ ଅକ୍ଲେଶକେଶବୋ ନାମ
ଦ୍ୱିତୀୟଃ ସର୍ଗଃ ।

---

ତୃତୀୟଃ ସର୍ଗଃ ।

କଂସାରିରପି ସଂସାରବାସନାବଦ୍ଧଶୃଙ୍ଖଳାଂ ।
ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜସୁନ୍ଦରୀଃ । ୧ ।

---

ବନେ । ତା ବଦନ କାନ୍ତି ! ଦରବିକଶିତ ସୁଧାଂଶୁଜ୍ୟୋତି । ୨୪
ଦେଖ ସଖି ନବକଢ଼ୀ ଅଶୋକ । ପ୍ରକାଶ ହୁଅନ୍ତେ ବଢ଼ଇ
ଶୋକ । ଛୋଟା କାନନ ସରୋବରକୂଳ । ସଧୀରେ ବହଇ
ମଲୟାନିଲ । ଏ ଦହଇ ମନ । ହରି ବିନୁ ଏ ଅନଳ ସମାନ । ୨୫
ନବୀନ ବକୁଳ ଚୂତମୁକୁଳ । ଶିଖରେ ମତ୍ତଭରେ ଭୃଙ୍ଗକୁଳ ।
କରନ୍ତି ଭଣିତ ମଧୁରବାଣୀ । ଶୁଣି ଭ୍ରମ ଚିତ୍ତ ହୋଏ
ମୋହିଣି । ମୁଁ କରିବି କିସ । ଜାଣିଲି କୃଷ୍ଣ ମୋହରେ ନିରାଶ । ୨୬
ଶୁଣ ସାଧୁଜନ ହରଷଚିତ୍ତ । ଅମୀୟପୂରିତ ହରିଚରିତ ।
କୃଷ୍ଣ କ୍ରୀଡ଼ା ଏହୁ ଚତୁର୍ଥ ଛାନ୍ଦ । ହରିବ ଦୁଃଖ ହୋଇବ
ଆନନ୍ଦ । ସେ ଧରଣୀଧର । ଗାଏ ହରିରସ ଅଛି ମଧୁର । ୨୭ ।

ଇତସ୍ତତସ୍ତାମନୁସୃତ୍ୟ ରାଧିକାମନଙ୍ଗବାଣବ୍ରଣଖିନ୍ନମାନସଃ ।
କୃତାନୁତାପଃ ସ କଳିନ୍ଦନନ୍ଦିନୀତଟାନ୍ତକୁଞ୍ଜେ ବିଷସାଦ ମାଧବଃ ।୨

ଗୁର୍ଜ୍ଜରୀରାଗ ଯତିତାଳାଭ୍ୟାଂ ଗୀୟତେ ।

ମାମିୟଂ ଚଳିତା ବିଲୋକ୍ୟ ବୃତଂ ବଧୂନିଚୟେନ ।
ସାପରାଧତୟା ମୟାପି ନ ବାରିତାତିଭୟେନ ।
ହରିହରି ହତାଦରତୟା ଗତା ସା କୁପିତେବ । ଧ୍ରୁବ । ୩ ।

---

ପଞ୍ଚମସ୍ଥାନ । ସ୍ୱଭ ଶ୍ରେଣି ।

ଏଥୁ ଅନନ୍ତରେ ଶୁଣ ରସିକଜନ ସୁଜାଣ ଯେତେବେଳେ କୃଷ୍ଣକ୍ରୀଡ଼ା ଦେଖିଲେ ରାଧା । ସିମନ୍ତିନୀବୃନ୍ଦ ମଧ୍ୟେ ବିହରେ ପଦ୍ମନାଭନେ ଗୃହଁଣ ସରୋଜମୁଖୀ ପାଇଲେ ବାଧା । ବାହୁଡଣ ଯାନ୍ତେ ସୁନ୍ଦରୀ । ଦେଖି ପୀଡା ପାଇଲେ ନନ୍ଦକଅଇର । ୧ । ଯହୁଁ ସେ ରାଧା ଗମନ କୃଷ୍ଣର ଅତି ବିମଳ ତେଜିଲେ ବିବିଧ କେଳି ବ୍ରଜକାମିନୀ । ଯେ ରାଧାରୂପ ପ୍ରକାଶ ସଂସାରବନ୍ଧନ-ପାଶ ତେଣୁ ସେ ହୃଦୟେ ତାପ ଅମ୍ବୁଜପାଣି । ପ୍ରିୟାଙ୍କୁ ସେ ଧରୁଣ ମନେ । ଚହ୍ନାନ୍ତି ଚଞ୍ଚଳଚିତ୍ତେ ମଧୁସୂଦନେ । ୨ । ପୀଡିଲେ ମଦନବାଣ ଗାଢ଼େ ଅତିଖୀଣ ମନ କାଳିନ୍ଦୀ ପୁଳିନରେ ରମଣୀ ବିଶେଷି । ଗହନ ନିକୁଞ୍ଜବନ ଲତା କେଳିଗୃହ ସ୍ଥାନ ବିଷାଦ ମାଧବ ତହିଁ ଭିତରେ ବସି । ଅତି ତାପୀ ଜଗତସାଇଁ । ନୟନ ମନ ରାଧାର ସନ୍ନିଧେ ଦେଇ । ୩ । ବସିଣ ମଧୁସୂଦନ ବିଶ୍ୱର କରନ୍ତି ମନ ନୟନେ ମୁଁ ଦେଖୁଅଛୁ ପ୍ରାଣରମଣୀ । ଗୋପବଧୂସମୂହରେ କେଳି କରଇଁ ନର୍ବରେ ବଚନ ମୁଁ ନ କହିଲି ନମ୍ରୁ ଭ୍ରାଣୀ । ଅପରାଧ କଲି ତାହାରେ । ଅତି ତାପେ

କିଂ କରିଷ୍ୟତି କିଂ ବଦିଷ୍ୟତି ସା ଚିରଂ ବିରହେଣ ।
କିଂ ଧନେନ ଜନେନ କିଂ ମମ ଜୀବିତେନ ଗୃହେଣ । ୪ ।
ଚିନ୍ତୟାମି ତଦାନନଂ କୁଟିଲଭ୍ରୂକୋପଭରେଣ ।
ଶୋଣପଦ୍ମମିବୋପରି ଭ୍ରମତାକୁଳଂ ଭ୍ରମରେଣ । ୫ ।
ତାମହଂ ହୃଦି ସଙ୍ଗତାମନିଶଂ ଭୃଶଂ ରମୟାମି ।
କିଂ ବନେଽନୁସରାମି ତାମିହ କିଂ ବୃଥା ବିଲପାମି । ୬ ।
ତନ୍ୱି ଖିନ୍ନମସୂୟୟା ହୃଦୟଂ ତବାକଳୟାମି ।
ତନ୍ନ ବେଦ୍ମି କୁତୋ ଗତାସି ନ ତେନ ତେଽନୁନୟାମି । ୭ ।

---

କୋପ କରି ଗଲେ ସେ ମୋରେ । ୪ । କି କରୁଥିବ ସେ ବସି କି ଅଶେ ବଚନ ଭଣି ଚିରକାଳୁଁ ବିରହୀ ସେ ହୋଇଛନ୍ତି ରମା । ତାର ବିନୁ ମୋର ମନେ ନାହିଁ କାର୍ଯ୍ୟ ଧନେ ଜନେ ସଦନରେ ନାହିଁ ଆଉ ସୁଖର ସୀମା । ଏବେ କହ ଜଗନ୍ନିବାସୀ । ରାଧାର ପୁଣ ସ୍ୱରୂପ ହୃଦରେ ଘୋଷି । ୫ । ଚିନ୍ତା କରୁଥିବ ମନ କ୍ରୋଧେ ରାଧାଙ୍କ ବଦନ ଦିଶୁଥିବ ଯେସନେ ଲୋହିତ କମଳ । ଭ୍ରୂଲତା ବେନିକୁଟିଳ କ୍ରୋଧରେ ଅତି ଚଞ୍ଚଳ ଯେସନକେ ଶୋଭନ ଭ୍ରସଲଯୁଗଳ । ତ ଏ ରଙ୍ଗପଦ୍ମ ଉପରେ । ବସି ନ ପାରି ଭ୍ରମନ୍ତି ଆକୁଳଭରେ । ୬ । ତାହାଙ୍କୁ ମୋ ହୃଦଗତେ ଯେନଣ ଥାଇ ନିରତେ କଶି ଦବା କ୍ଷଣେହେଁକ ଅନ୍ତର ନାହିଁ । ଅତ୍ୟନ୍ତ ଉସ୍ତୁକ ହୋଇ ବିବିଧ କେଳି କରଇ ବିଚ୍ଛେଦ କଲ୍ପକ ମୋତେ ଦାରୁଣ ବହୁ । ଲୋଡ଼ବ କେବଣ ବନରି । ବିଅର୍ଥେ ବିଳାପ ମାତ୍ର କରିବା ସାର । ୭ । ବୋଲନ୍ତି ଦେବ ମୁରାରି ଶୁଣ ସଖି କୃଶୋଦରି ନିଷ୍ଠୁରେ ଜାଣିଲି ମୁହିଁ ତୋହର ହୃଦୟ । ହିଂସା ଅଭିମାନ ବହି ଅତି ଖିନ୍ନ କଲୁ

ତୃଷ୍ୟସେ ପୁରତୋ ଗତାଗତମେବ ମେ ବିବଧାସି
ଙ୍କିଂ ପୁରେବ ସସମ୍ଭ୍ରମଂ ପରିରମ୍ଭଣଂ ନ ଦଦାସି । ୮ ।
କ୍ଷମ୍ୟତାମପରଂ କଦାପି ତବେଦୃଶଂ ନ କରୋମି ।
ଦେହି ସୁନ୍ଦରି ଦର୍ଶନଂ ମମ ମନ୍ମଥେନ ଦୁନୋମି । ୯ ।
ବର୍ଣ୍ଣିତଂ ଜୟଦେବକେନ ହରେରିଦଂ ପ୍ରବଣେନ ।
କେନ୍ଦୁବିଲ୍ୱସମୁଦ୍ରସମ୍ଭବରୋହିଣୀରମଣେନ । ୧୦ ।
ହୃଦି ବିସଲତାହାରୋ ନାୟଂ ଭୁଜଙ୍ଗମନାୟକଃ ।
କୁବଲୟଦଳଶ୍ରେଣୀ କଣ୍ଠେ ନ ସା ଗରଳଦ୍ୟୁତିଃ ।

---

ଦେହି କଠିନ ହୃଦୟ ତୋର ଅଛି ନିର୍ଦ୍ଦୟା । ନୋହିଲି ମୁଁ ବିନୟୀ ତୋରେ । ସେ କାରଣେ ଗଲୁ ପାଶେ ନଇଲୁ ବାରେ । ୮ । ଲୋଚନେ ଦେଖିଛୁ ମୋର ବଧୂବଦନ ତୋହର ଅଗ୍ରେ ଦେଖୁଛୁ ଆସୁଛୁ ଯାଉଛୁ ପ୍ରିୟେ । ପୂର୍ବେ ତୋହର ମୋର ଯେସନେ ମନ ସାଦର ତେସନ ପ୍ରାପ୍ତେକ କଂକେ ସୁଦୟା ନୁହେ । ଭୁଜେ ଭିଡ଼ି ହୃଦୟଗତେ । ଗାଢ଼ ଆଲିଙ୍ଗନ କଂକେ ନ କଲୁ ମୋତେ । ୯। କ୍ଷମା କର ମୋତେ ସଖି ବିକଚକମଳ-ମୁଖି କଦାଚତେ ଦୋଷ ଆଉ କରିବ ନାହିଁ । ଦେଖାଦେଉ ବିନା ମୋତେ ପ୍ରସନ୍ନ ହୋଇଣ ଚିତ୍ତେ ନିର୍ଦ୍ଦୟ ମଦନ ଦହୁ-ଅଛଇ ଦେହୀ । ବାରେ ସଖି କରୁଣା କର । ବଜ୍ରହୁଁ କଠିନ ଏହୁ ଅନଙ୍ଗଶର । ୧୦ ।
ହରିର ରହସ୍ୟ ବାଣୀ ଜୟଦେବ ଯାହା ଭଣି କେନ୍ଦୁବିଲ୍ୱ ନାମ ଗ୍ରାମ ସମୁଦ୍ରବତ । ତହିଁ ଉତପତ୍ତି ଚନ୍ଦ୍ର କବିରାଜ ପୂର୍ଣ୍ଣିପଦ ସକଳ ସଂସାରସାର ସଙ୍ଗୀତରତ । ପଦ୍ମାବତୀ ସମୁଣକାନ୍ତ ।

ମଲୟଜରଜୋନେଦଂ ଭସ୍ମ ପ୍ରିୟାରହିତେ ମୟି,
ପ୍ରହର ନ ହରଭ୍ରାନ୍ତ୍ୟାନଙ୍ଗଃ କ୍ରୁଧା କିମୁ ଧାବସି । ୧୧ ।
ପାଣୌ ମାକୁରୁ ଚୂତଶାୟକମମୁଂ ମା ଚାପମାରୋପୟ ।
କ୍ରୀଡାନିର୍ଜିତବିଶ୍ୱମୂର୍ଚ୍ଛିତଜନାଘାତେନ କିଂ ପୌରୁଷଂ ।
ତସ୍ୟା ଏବ ମୃଗୀଦୃଶୋ ମନସିଜପ୍ରେଙ୍ଖତ୍କଟାକ୍ଷାଶୁଗ-
ଶ୍ରେଣୀଜର୍ଜରିତଂ ମନାଗପି ମନୋ ନାଦ୍ୟାପି ସନ୍ଧୁକ୍ଷତେ ।୧୨।

---

ରୋହିଣୀର ନାଥ ଏ ନିର୍ମଳ ଉଦିତ । ୧୧ । ବୋଲନ୍ତି ଶୁଣହେ ମାର ତୋହର ରିପୁ ସେ ହର କଂକେ ଧାଇଅଛୁଁ ମୋତେ ସରୋଷ ହୋଇ । ଆଭରଣମାନ ଗୃହିଁ ଭ୍ରାନ୍ତି ଅବା କରୁ ଭୁହି କହଇଁ ଅଗ୍ରତେ ତୋର ରତିର ସାଇଁ । ଦଣ୍ଡେ ରହି ଶୁଣ ଉତ୍ତର । ଦୁଃଖିଜନ ଦେଖି ଦୟା କରନ୍ତି ଧୀର । ୧୨ । ହୃଦରେ ଧରିଛି ମୋର କଳନ ମୃଣାଳହାର ନୁହଇ ଭୁଜଙ୍ଗ-ରାଜ ଅନନ୍ତ ଅହି । କୁବଳୟଦଳମାଳ କଣ୍ଠେ ନୁହଇ ଗରଳ ଦେହେ ମଲୟଜ ମୋର ଭସ୍ମ ନୁହଇ । ଶୁଣ କାମ କହଇ ତୋତେ । ନୀଳକଣ୍ଠ କୋଳେ କାନ୍ତା ଥାଇ କେମନ୍ତେ । ୧୩। ପ୍ରିୟାର ବିଚ୍ଛେଦ ମୋର ତାପ ଅଛି ଗୁରୁତର ଅନଳ ଦହନ ପ୍ରାପ୍ତ ହେଉଛି ଅଙ୍ଗ । ତେଣୁ ସେ ଏମାନ ଆଣି ହୃଦୟେ ଅଛଇଁ ଯେନ ବିଚାରିଣ କୋପ ତୁ ହୋ କର ଅନଙ୍ଗ । ତୋତେ କାମ ବିନୟ କଲି । ପ୍ରହାର ନ କର ଶର ଶଙ୍କର ବୋଲି । ଶୁଣ ରାମ୍ୟ ମନମଥ ତନୁ ଅଛି ଅଶକତ ଚୂତଶର ଚାପେ ଆଉ ନ ମାର ମୋତେ । ଲୀଳାଏ ଜିଣି ସଂସାର ତ୍ରୈଲୋକ୍ୟ ଗାହମା ଯାର ମୋହଗଲା ପ୍ରାଣୀ ମାତ୍ର କି ଯଶ ତୋତେ । ମୃଗାକ୍ଷୀର କଟାକ୍ଷ-ବାଣ । ଶରୀରେ ପଡ଼ି ଜର୍ଜର ହେଉଛି ପ୍ରାଣ । ୧ ।

ଭ୍ରୂଚାପେ ନିହିତଃ କଟାକ୍ଷବିଶିଖୋ ନିର୍ମାତୁ ମର୍ମବ୍ୟଥାଂ .
ଶ୍ୟାମାତ୍ମା କୁଟିଲଃ କରୋତୁ କବରୀଭାରୋଽପି ମାରୋଦ୍ୟମଂ ।
ମୋହଂ ତା ବଦୟଞ୍ଚ ତନ୍ୱି ତନୁତାଂ ବିମ୍ବାଧରୋ ରାଗବାନ୍
ସଦ୍‌ବୃତ୍ତସ୍ତନମଣ୍ଡଳସ୍ତବ କଥଂ ପ୍ରାଣୈର୍ମମ କ୍ରୀଡ଼ତି । ୧୩ ।
ତାନ ସ୍ପର୍ଶସୁଖାନ ତେ ଚ ତରୁଣାଃ ସ୍ନିଗ୍ଧା ଦୃଶୋର୍ବିଭ୍ରମା-
ସ୍ତଦ୍‌ବକ୍ତ୍ରାମ୍ବୁଜସୌରଭଂ ସଚ ସୁଧାସ୍ୟନ୍ଦୀ ଗିରାଂ ବକ୍ରିମା ।
ସା ବିମ୍ବାଧରମାଧୁରୀତି ବିଷୟାସଙ୍ଗେଽପି ଚେନ୍ମାନସଂ
ତସ୍ୟାଂ ଲଗ୍ନସମାଧି ହନ୍ତ ବିରହବ୍ୟାଧିଃ କଥଂ ବର୍ଦ୍ଧତେ ।୧୪।

---

ଶୁଣ ତୁ କହଇଁ ସଖି ଅକଲଙ୍କଶଶିମୁଖି ଭ୍ରୂଲତା ତୋ ଫୁଲ-ଧନୁ ନୟନ ଶର । ସେ ମୋର ମରମସ୍ଥାନେ ପୀଡ଼ୁଅଛନ୍ତି ଅନୁ-କ୍ଷଣେ କୁଟିଳକବରୀ ଜୀବ ଘେନିବ ମୋର । କ୍ରୂରଜନ ଏସନ ରୀତି । ଭ୍ରୂଲତା ଅପାଙ୍ଗ ବକ୍ର ସ୍ୱଭାବ ଗତି ।୧୬। ସୁରଙ୍ଗ ଅଧର ତୋର ପକ୍ୱବିମ୍ବଫଳାକାର ସ୍ୱଭାବେ ରଙ୍ଗ ତାହାର ବହୁଣଅଛି । ସଦ୍‌ବୃତ୍ତ କୁଚଭାର ଗୁରୁ ଏ ହରସ ଧୀର ଏ କଂକେ ମୋହର ମର୍ମସ୍ଥାନ ଦହୁଛି । କୃପା ମୋରେ କର ସୁକେଶି । ମଜ୍ଜି ମଦନ-ନଦୀରେ ଯାଉଛି ଭାସି ।୧୭। ପୁନରପି ବୋଲୁଛନ୍ତି ଚତୁର୍ଦ୍ଦଶ ଶ୍ଳୋକପଦ ରାଧା ତୁଲେ ପୂର୍ବେ କ୍ରୀଡ଼ା କରୁଛି ମୁହିଁ । ସ୍ପରଶନେ କୁଚଭାର ଆଲିଙ୍ଗନେ ତନୁବର ଯେତେ ସୁଖ ଲଭପଢ ଅଛଇ ଜିହ୍ୱ । ଚଞ୍ଚଳ ତା ତରଳ ଆକ୍ଷୀ । ଅପାଙ୍ଗେ ଚାହିଁଲେ କାମେ ହୁଅଇ ଦୁଃଖି । ୧୮। ଦେଖିଣ ତାପ ମୋହର ପ୍ରିୟାର ମନେ କାତର ଭୁଜେ ଭିଡ଼ି ଆଲିଙ୍ଗନ ଚୁମ୍ବନ ଦେଇ । ତେଣୁ ସେ ମଦନଜ୍ୱର ଶରୀରେ ନ ରହେ ମୋର ସୁଖ-ଜଳଧି ମଧ୍ୟରେ ମଜ୍ଜଇ ମୁହିଁ । ମୁଖ ତାର ପଦ୍ମସୁବାସ । ତାଙ୍କ ପ୍ରାପ୍ତ ମନ

ଭ୍ରୂପଲ୍ଲବ ଧନୁରପାଙ୍ଗତରଙ୍ଗିତାନି
ବାଣା ଗୁଣଃ ଶ୍ରବଣପାଳିରିତି ସ୍ମରେଣ ।
ତସ୍ୟାମନଙ୍ଗଜୟଜଙ୍ଗମଦେବତାୟା
ମସ୍ତ୍ରାଣି ନିର୍ଜିତଜଗନ୍ତି କିମର୍ପିତାନି । ୧୫ ।

ତିର୍ଯ୍ୟକ୍‌କଣ୍ଠବିଲୋଲମୌଳିତରଳୋତ୍ତଂସସ୍ୟ ବଂଶୋଚ୍ଚର-
ଦ୍ଦୀପ୍ତିସ୍ଥାନକୃତାବଧାନଲଲନାଲକ୍ଷୈର୍ନସଂଲକ୍ଷିତାଃ ।
ସଂମୁଗ୍ଧଂ ମଧୁସୂଦନସ୍ୟ ମଧୁରେ ରାଧାମୁଖେନ୍ଦୌ ମୃଦୁ-
ସ୍ପନ୍ଦଂ କନ୍ଦଳିତାଶ୍ଚିରଂ ଦଧତୁ ବଃ କ୍ଷେମଂ କଟାକ୍ଷୋର୍ମୟଃ ।୧୬।

ଇତି ଶ୍ରୀଗୀତଗୋବିନ୍ଦେ ମୁଗ୍ଧମଧୁସୂଦନୋ ନାମ
ତୃତୀୟଃ ସର୍ଗଃ ।

---

ମୋର ନ ଛାଡ଼େ ପାଶ ।୧୯। ମନ୍ଦହାସ ବକ୍ରବାଣୀ ପୀୟୂଷ-ପୂରିତ ଜାଣି ଶ୍ରବଣେ ଶୁଣନ୍ତେ ଚିତ୍ତ ପ୍ରମୋଦ ହୁଏ । ବିମ୍ବା-ଧର ମଧୁ ପାନେ ତୋଷ ଅଛି ମୋର ମନେ ବିଷୟବିଳାସ ଯେତେ ଅନନ୍ଦମୟେ । ତାହା ସଙ୍ଗେ କରନ୍ତି ଭୋଗ । କେମନ୍ତେ ବର୍ତ୍ତିବ ଏବେ ବିରହ ରୋଗ ।୨୦। ଭ୍ରୂଲତା କାର୍ମୁକ ତୋର ନୟନ ତୀନଙ୍ଗଶର ସଜନୀ ଶ୍ରବଣ ଯାଏ ଅଞ୍ଜନରେଖା । ଜଗତ ଜିଣି ମଦନ ବିବିଧ ଆୟୁଧମାନ ସ୍ୱୀକାର ତହିଁ ଥୋଇ କରନ୍ତି ଶିକ୍ଷା । ଅଙ୍ଗେ କରଅଛୁ ତାହାକୁ । ତ୍ରିଭୁବନେ ସମ ଆଉ ନାହିଁ ଯାହାକୁ ।୨୧।
ଶୁଣ ହେ ସୁଜନ ଜନ ପ୍ରସନ୍ନ କରଣ ମନ ରାଧାର ବିଚ୍ଛେଦେ କୃଷ୍ଣ ବାଉଳ ହୋଇ । ହରିବ ବିଷୟ ତାପ ବହିକି ଯେସନେ ଅପ ଲଭିବ ପରମସୁଖ ହରଷ ହୋଇ । ଶ୍ରୀକୃଷ୍ଣଙ୍କ ପଦ୍ମଚରଣ । କିଙ୍କର ଧରଣୀଧର ପଶେ ଶରଣ ।୨୨।

ଚତୁର୍ଥଃ ସର୍ଗଃ ।

ଯମୁନାତୀରବାନୀରନିକୁଞ୍ଜେ ମନ୍ଦମାସ୍ଥିତଂ ।
ପ୍ରାହ ପ୍ରେମଭରୋଦ୍ଭ୍ରାନ୍ତଂ ମାଧବଂ ରାଧିକାସଖୀ । ୧ ।

କର୍ଣ୍ଣାଟରାଗଯତିତାଳାଭ୍ୟାଂ ଗୀୟତେ ।

ଅସ୍ୟ **ଲକ୍ଷଣଂ** ।

କୃପାଣପାଣିର୍ଗଜଦନ୍ତପତ୍ରମେକଂ ବହନ୍ ଦକ୍ଷିଣକର୍ଣ୍ଣପୂରଂ ।
ସମ୍ପୂଜ୍ୟମାନଃ ସୁରଚାରଣୌଘୈଃ କର୍ଣ୍ଣାଟରାଗଃ ଶିଖିକଣ୍ଠନୀଳଃ ।

ନିନ୍ଦତି ଚନ୍ଦନମିନ୍ଦୁକିରଣମନୁବିନ୍ଦତି ଖେଦମଧୀରଂ ।
ବ୍ୟାଳନିଳୟମିଳନେନ ଗରଳମିବ କଳୟତି ମଳୟସମୀରଂ ।
ସା ବିରହେ ତବ ଦୀନା । । ଧ୍ରୁବ । ୨ ।
ମାଧବ ମନସିଜବିଶିଖଭୟାଦିବ ଭାବନୟା ତ୍ୱୟି ଲୀନା ।

---

ଷଷ୍ଠଛାନ୍ଦ । ରାଗ ଦେଶାକ୍ଷ ।

ଶୁଣ ହେ ସୁଜନ ଏଥୁଁ ରସବଚନ । ଯମୁନାପୁଳିନ ବନେ ମଧୁସୂଦନ । ବିରହ ତାପରେ ଅଛି ବିଷାଦ ହୋଇ । ବସିଛନ୍ତି ଯଦୁପତି ଶିର ଲୁଆଁଇ । ୨ । ରାଧିକାର ସ୍ନେହଭର ମନରେ ଧରି । ସଭୟ ମନରେ ଛନ୍ଦଶୀଳ ମୁରାରି । ୩ । ଏସନ ସମୟେ ଆସି ମିଳେ ସଜନୀ । ରାଧାର ବିରହ ଯେତେ କହଇ ଘେନ । ୪ । ଶୁଣ ତୁ ମାଧବ ମୋର ରାଧିକା ସଖୀ । ତୋହର ବିରହେ ଅଛି ହୋଇଛୁ ଦୁଃଖୀ । ୫ ।

ମନ୍ମଥ ଶରଭୟରେ ଆରତ ହୋଇ । ଭାବଇ ଚୈତନ୍ୟ ମନ ତୋତହିଁ ଦେଇ । ୬ । ନିନ୍ଦଇ ଚନ୍ଦନ ଚନ୍ଦ୍ରକିରଣ ଗୃହିଁ । ଅତି ତାପେ ମନେ ଧଇର୍ଯ୍ୟ ନ ଧରଇ । ୭ । ମଳୟପବନ ସଖୀ ଲାଗନ୍ତେ ଦେହ । ଗରଳଜ୍ୱାଳାର ପ୍ରାୟ କରଇ ଦାହ ।

ଅବିରଳନିପତିତମଦନ ଶରାଦିବ ଭବଦବନାୟ ବିଶାଳଂ ।
ସ୍ୱହୃଦୟମର୍ମଣି ବର୍ମ କରୋତି ସଜଳନଳିନୀଦଳଜାଳଂ । ୩ ।
କୁସୁମବିଶିଖଶରତଳ୍ପମନଳ୍ପବିଳାସକଳାକମନୀୟଂ ।
ବ୍ରତମିବ ତବ ପରିରମ୍ଭସୁଖାୟ କରୋତି କୁସୁମଶୟନୀୟଂ । ୪ ।
ବହତି ଚ ବଳିତ ବିଲୋଚନଜଳଧରମାନନକମଳମୁଦାରଂ ।
ବିଧୁମିବ ବିକଟବିଧୁନ୍ତୁଦଦନ୍ତଦଳନଗଳିତାମୃତଧାରଂ । ୫ ।
ବିଲିଖତି ରହସି କୁରଙ୍ଗମଦେନ ଭବନ୍ତମସମଶରଭୂତଂ ।
ପ୍ରଣମତି ମକରମଧୋ ବିନିଧାୟ କରେ ଚ ଶରଂ ନବଚୂତଂ ।୬

---

ବିଚାରଇ ସଖୀ ସେ ଚନ୍ଦନ କନ୍ଦର । କାଳସର୍ପ ସଦନ ତହିଁର ଉପର । ୯ । ତାର ବିଷଜ୍ୱାଳା ଯେବେ ବହୁଛି ଏହି । ତେଣୁ ସେ ଜୀବନ ମୋର ହେଉଛି ଦହି । ୧୦ । ମନସିଜଶର ପଡ଼େ ଅନୁବରତ । ସଖୀର ମରମସ୍ଥାନେ ହୃଦ-ୟଗତ ।୧୧। ତେଣୁ ସେ ଜଳରୁ ଆଣି ପଙ୍କଜଦଳ । ଦେଅଇ ସଖୀର ଉରେ କୁଚମଣ୍ଡଳ ।୧୨। ତହୁଁ ସେ ହୃଦରେ ତୋତେ ଅଛଇ ଧରି । କାମଶର-ନିବାରଣେ କବଚ କରି ।୧୩। ଗୁଡଣ ବିଳାପ କଲା ସଖୀ ମୋହର । ବ୍ରତ ଆଚରଣ କଲା ଦୃଢ଼ମନର ।୧୪। ତବ ଆଲିଙ୍ଗନ ସୁଖ ବାଞ୍ଛିତ ମନ । ଶୋଇଛି କୁସୁମ-ଶଯ୍ୟା କରି ବିଧାନ ।୧୫। ବହଇ ଲୋତକ ସଖୀ ମୁଖକମଳ । ଲୋଚନୁଁ ଚଳ ବରଷେ ଏ ଜଳଧାର ।୧୬। ରାହୁଗ୍ରାସଦନ୍ତ-ଘାତେ ଚନ୍ଦ୍ର ଯେସନ । ଝରଇ ଅମୃତଧାର ଜାଣି ତେସନ ।୧୭ ଏକାନ୍ତେ କସ୍ତୁରୀ ଯେବେ ବସିଣ ସଖୀ । ଲେଖଇ ମଦନରୂପ ଅତି ସୁରେଖି ।୧୮। ମକର ଗୋଟିଏ ଜାନ କରିଣ ଲେହି । କରେଣ ଚୂତବଳ୍ଲୀ ଶରେକ ଦେଇ ।୧୯। ଅନଙ୍ଗମରତି

ପ୍ରତିପଦମିଦମପି ନିଗଦତି ମାଧବ ତବ ଚରଣେ ପତିତାହଂ ।
ତ୍ୱୟି ବିମୁଖେ ମୟି ସପଦି ସୁଧାନିଧିରପି ତନୁତେ ତନୁଦାହଂ ।୭
ଧ୍ୟାନଲୟେନ ପୁରଃ ପରିକଲ୍ପ୍ୟ ଭବନ୍ତମତୀବ ଦୁରାପଂ ।
ବିଲପତି ହସତି ବିଷୀଦତି ରୋଦିତି ଚଞ୍ଚତି ମୁଞ୍ଚତି ତାପଂ ।୮।
ଶ୍ରୀଜୟଦେବଭଣିତମିଦମଧିକଃ ଯଦି ମନସାନଟନୀୟଂ ।
ହରିବିରହାକୁଲବଲ୍ଲବଯୁବତିସଖୀ ବଚନଂ ପଠନୀୟଂ । ୯ ।
ଅବାସୋ ବିପିନାୟତେ ପ୍ରିୟସଖୀମାଲାପି ଜାଲାୟତେ ।
ତାପୋଽପି ଶ୍ୱସିତେନ ଦାବଦହନଜ୍ୱାଳାକଳାପାୟତେ ।
ସାପି ତ୍ୱଦ୍ବିରହେଣ ହନ୍ତ ହରିଣୀରୂପାୟତେ ହା କଥଂ ।
କନ୍ଦର୍ପୋଽପି ଯମାୟତେ ବିରଚୟନ୍ ଶାର୍ଦ୍ଦୂଲବିକ୍ରୀଡିତଂ ।୧୦।

---

ତୋତେ ଅଭିଳାଷଇ । ଚରଣେ ପଡି ବୋଲଇ ଶରଣ ହରି ।୨୦। ପୁଣ ପୁଣ ପଦେ ପଡି ବୋଲଇ ରାମା । ତୋର ବିନୁ ମୋର ତନୁ ଦହେ ଚନ୍ଦ୍ରମା ।୨୧ । ଧ୍ୟାନରେ ଅଗ୍ରତେ ତୋତେ ଲିଖି କଳଇ । ବିଷାଦ ହୋଇଣ ପୁନରପି ହସଇ । ୨୨ । ତୁହିଁଲେ ନ ଦେଖି ଚଇତନ୍ୟ ହରଇ । ବିଳାପ ବଚନ କହେ ଦୁଃଖିତ ହୋଇ । ୨୩ । ଯଣେ ଯଣେ ରୋଦନ ସେ କରଇ ସଖି । ଯଣକେ ଛାଡଣ ତାପ ଧଇର୍ଯ୍ୟ ହୋଇ । ୨୪ । ରାଧାର ବିରହବିକଳା ଦୂତିକା ବାଣୀ । କୃଷ୍ଣରେ କହନ୍ତି ଜୟଦେବ ଯା ଭଣି ।୨୫। ମାନସ ଧିଅନେ ଜୟଦେବଙ୍କୁ ଗୁଣି । ଏହି ଅନୁଭବେ ତରେ ମହତପ୍ରାଣୀ । ୨୬ । ତୋହର ବିରହେ ଛୀଣ ବହିଲା ମତି । ଘାଉଅ ହରିଣୀପ୍ରାୟେ ହୋଇ ଯୁବତି । ୨୭ । ଗୃହକୁ ଅରଣ୍ୟ ପ୍ରାୟ ମଣଇ ସଖୀ । ଜାଲମାଳା ଭଳି ବେଢ଼ି ବସିଲେ ଅଖି ।୧୮। ଶୀତଳ ସମୀର ତାର ତାପଇ କାୟେ ।

## ଦେଶାଖ୍ୟରାଗୈକତାଳତାଳାଭ୍ୟାଂ ଗୀୟତେ ।

### ଅସ୍ୟ ଲକ୍ଷଣଂ ।

ଆସ୍ଫୋଟନାବିଷ୍କୃତଲୋମହର୍ଷୋ ନିବଦ୍ଧସନ୍ନାହବିଶାଳବାହୁଃ ।
ପ୍ରାଂଶୁଃପ୍ରଚଣ୍ଡ ଦ୍ୟୁତିରିନ୍ଦୁଗୌରୋ ଦେଶାଖ୍ୟରାଗଃ ଖଳ ମଲ୍ଲରୂପଃ ।

ସ୍ତନବିନିହିତମପି ହାରମୁଦାରଂ ।
ସା ମନୁତେ କୃଶତନୁରିବ ଭାରଂ ।
ରାଧିକା ତବ ବିରହେ କେଶବ । ୧୧ । ଧ୍ରୁବଂ ।
ସରସମସୃଣମପି ମଳୟଜପଙ୍କଂ ।
ପଶ୍ୟତି ବିଷମିବ ବପୁଷି ସଶଙ୍କଂ । ୧୨ ।
ଶ୍ୱସିତପବନମନୁପମପରିଣାହଂ ।
ମଦନଦହନମିବ ବହତି ସଦାହଂ । ୧୩ ।
ଦିଶି ଦିଶି କିରତି ସଜଳକଣଜାଳଂ ।
ନୟନନଳିନମିବ ବିଗଳିତନାଳଂ । ୧୪ ।

---

ଜ୍ୱାଳା ଅଗ୍ନି ଦାବ କଷେ କରଇ ଭସ୍ମେ । ୨୯ । ମଦନ କରାତ ବାଣ କାଳ ତାହାକୁ । ଶାର୍ଦ୍ଦୂଳ ହରଷ ଯେହ୍ନେ ଦେଖି ଜନ୍ତୁକୁ ।୩୦। ଶୁଣ ତୁ କେଶବ ରାଧା ତୋହର ବିନୁ । ତାଲେ ଅତ ଯିଣ୍ଣ ତାର ହୋଇଲା ତନୁ । ୩୧ । ଅମଳମୁକୁତାହାର କୁଚ ଉପରେ । ବହି ନ ପାରଇ ଗରୁ ହୋଇଲା ତାରେ ।୩୨ ମଳୟ ଚନ୍ଦନପଙ୍କ ଦେଖି ତରୁଣୀ । ତନୁକୁ ଶଙ୍କଇ କି ଏ ଗରଳ ଜାଣି ।୩୩। ନିଶ୍ୱାସପବନ ଅନୁପମ ଶୀତଳ । ତୋର ବିନୁ ଯେସନେ ମଦନ-ଅନଳ । ୩୪। ନିରନ୍ତରେ ଅଶ୍ରୁଜଳ ଗଳଇ ତାର । ସକଳଦିଗେ ପକାଇ ନୟନ ନୀର । ୩୫ । ନିରସ ହୋଇଲା ତାର ନୟନବେନି । ମୃଣାଳୁଁ ଖସିଲା ପଦ୍ମ-

ଜୟନବଶଯ୍ୟମପି କଣଲୟନ୍ତଲ୍ପଂ ।
ଗଣୟତି ବହୁତନୁହୁତାଶବିକଳ୍ପଂ । ୧୫ ।
ତ୍ୟଜତି ନ ପାଣିତଲେନ କପୋଲଂ ।
ବାଲଶଶିନମିବ ସାୟମଲୋଲଂ । ୧୬ ।
ହରିରିତି ହରିରିତି ଜପତି ସକାମଂ ।
ବିରହବିହିତମରଣମେବ ନିକାମଂ । ୧୭ ।
ଶ୍ରୀଜୟଦେବଭଣିତମିତି ଗୀତଂ ।
ସୁଖୟତୁ କେଶବପଦମୁପନୀତଂ । ୧୮ ।

ସା ରୋମାଞ୍ଚତି ଶୀତ୍କରୋତି ବିଲପତ୍ୟୁତ୍କମ୍ପତେ ତାମ୍ୟତି
ଧ୍ୟାୟତ୍ୟୁଦ୍ଭ୍ରମତି ପ୍ରମୀଲତି ପତତ୍ୟୁଦ୍ୟାତି ମୂର୍ଚ୍ଛତ୍ୟପି ।
ଏତାବତ୍ୟତନୁଜ୍ୱରେ ବରତନୁର୍ଜୀବେନ୍ନ କିଂ ତେ ରସାତ୍
ସ୍ୱର୍ବୈଦ୍ୟପ୍ରତିମ ପ୍ରସୀଦସି ଯଦି ତ୍ୟକ୍ତୋଽନ୍ୟଥା ହସ୍ତକଃ ।୧୯

ପାଣ୍ଡୁଡ଼ା ଜାଣି । ୩୬ । ନବୀନପଲ୍ଲବଶଯ୍ୟା ଦେଖି କାମିନୀ । ଗୃହିଁ ନ ପାରଇ କି ଏ ଜଳଇ ବହ୍ନି ।୩୭। ବସିଛୁ କପୋଳେ କର ଦେଇଣ ବାମା । ବଦନ ସନ୍ଧ୍ୟାର କି ନବୀନଚନ୍ଦ୍ରମା ।୩୮ ହରି ହରି ବୋଲି ଜପେ ସକାମ କରି । ସୁଫଳ ହୋଇବ ଯେବେ ଆସିବେ ହରି । ୩୯ । ନୋହିଲେ ବିରହତାପେ ହୋଇବ ହତ । ନିଷ୍କାମ କରଣ ଭକ୍ତି ଲଭିବୁ ମୁଁ ତ । ୪୦ । ଶୁଣ ହେ ସୁଜନ ଜୟଦେବ ଯା ଭଣି । ବଇକୁଣ୍ଠନାଥ କୃଷ୍ଣ ସୁଖ ଏ ବାଣୀ ।୪୧। ଏ ତୋର ହୃଦୟ ହରି କଠୋର ଅଛି । ବଜ୍ରକୁଁ କଠିନ ତୋର ଦାରୁଣ ମତି । ୪୨ । କାମାତୁର ବ୍ୟାଧିପୀଡ଼ା ପାଉଛି ରାଧା । ତୋର ଅଙ୍ଗସଙ୍ଗ ପାଇ ତୁଟିବ ବାଧା । ୪୩ । ଅସାଧବ୍ୟାଧି ଅଶ୍ୱିନୀକୁମାର ପରି । ତୁମ୍ଭ ଗଙ୍ଗା-

ସ୍ତବକରୁଚିଂ ଦଧିବତୀବୈଦ୍ୟହୃଦ୍ୟ ଭ୍ରୁଦଙ୍ଗସଙ୍ଗାମୃତମାତ୍ରସାଧ୍ୟଂ ।
ତ୍ୱମୁକ୍ତବାଧାଂ କୁରୁଷେ ନ ରାଧାମୁପେନ୍ଦ୍ରବଜ୍ରାଦପି ଦାରୁଣୋଽସି
କନ୍ଦର୍ପଜ୍ୱରସଞ୍ଜ୍ୱରାତୁରତନୋରାଶ୍ଚର୍ଯ୍ୟମସ୍ୟାଶ୍ଚିରଂ ।
ଚେତଶ୍ଚନ୍ଦନଚନ୍ଦ୍ରମଃ କମଳନୀ ଚିନ୍ତାସୁ ସନ୍ତାମ୍ୟତି ।
କିନ୍ତୁ କ୍ଳାନ୍ତିବଶେନ ଶୀତଳତନୁଂ ତ୍ୱାମେକମେବ ପ୍ରିୟଂ
ଧ୍ୟାୟନ୍ତୀ ରହସି ସ୍ଥିତା କଥମପି କ୍ଷୀଣା କ୍ଷଣଂ ପ୍ରାଣିତି ।୨୧।

କ୍ଷଣମପି ବିରହଃ ପୁରା ନ ସେହେ
ନୟନନିମୀଳନଖିନ୍ନୟା ଯୟା ତେ ।
ଶ୍ୱସିତି କଥମସୌ ରସାଳଶାଖାଂ
ଚିରବିରହେଣ ବିଲୋକ୍ୟ ପୁଷ୍ପିତାଗ୍ରାଂ ।୨୨।

---

ମୃତ ଦେଇ ରଖ ମୁରାରି ।୪୩। କନ୍ଦର୍ପଜ୍ୱରେ ଅତୁଳ ଅଛି ଶରୀର । ଅଶ୍ଚର୍ଯ୍ୟ ହୋଇଛି ଚିତ୍ତ ନ ରହେ ତାର ।୪୪। ଚନ୍ଦ୍ର ଚନ୍ଦନ କମଳ ଚିନ୍ତିଲେ ମନ । ସନ୍ତାପ ହୁଅଇ ସଖୀ ହରାଇ ଜ୍ଞାନ ।୪୫। ତବ କ୍ରୀଡାରସ ଧ୍ୟାନ କରଇ ବସି । ଦୁର୍ବଳ ହୋଇଲା ଅଛି କୁଟିଳକେଶୀ ।୪୬। ଅନଙ୍ଗଅନଳୁଁ ବାରେ ଉଦ୍ଧରି-ଧର । ତୁହି ସେ ତାହାର ପ୍ରିୟ ଶୀତଳ କର ।୪୭। ପୂର୍ବେ କ୍ଷଣେ-କ ତୋହର ବିରହ ସଖୀ । ସହି ନ ପାରଣ ଅଛି ହୁଅଇ ଦୁଃଖୀ ।୪୮। ନୟନ ପିଛାଡିବାର ବିଚ୍ଛେଦ ପାଇ । ମନସିଜତାପେ କ୍ଷିଣ୍ଣ ହୁଅଇ ଦେଖି ।୫୦। ଏବେ ବହୁଛି ମନ୍ଦ ମଳୟପବନ । ଚୂତଡାଳ ମୁକୁଳିତ ଅଛି ଗହନ ।୫୧। ଏହାକୁ ଦେଖିଲେ କି ସେ ଧରି ଦେହ । ଚିରକାଳୁଁ ତୋହରେ ହୋଇଣ ବିରହି ।୫୨। ଶୁଣ ହେବ

ବୃଷ୍ଣିବ୍ୟାକୁଳଗୋକୁଳାବନବଶାଦୁଦ୍ଧୃତ୍ୟ ଗୋବର୍ଦ୍ଧନଂ ।
ବ ଭ୍ରବଲ୍ଲବବଲ୍ଲଭାଭିରଧିକାନନ୍ଦାଚ୍ଚିରଂ ଚୁମ୍ବିତଃ ।
ଦର୍ପେଣେବ ତଦର୍ପିତାଧରତଟୀସିନ୍ଦୂରମୁଦ୍ରାଙ୍କିତୋ-
ବାହୁର୍ଗୋପତନୋସ୍ତନୋତୁ ଭବତାଂ ଶ୍ରେୟାଂସି କଂସଦ୍ୱିଷଃ ।୧୩

ଇତ ଶ୍ରୀଗୀତଗୋବନେ ସ୍ନିଗ୍ଧମଧୁସୂଦନୋନାମ
ଚତୁର୍ଥଃ ସର୍ଗଃ ।

---

ପଞ୍ଚମଃ ସର୍ଗଃ ।

ଅହମିହ ନିବସାମି ଯାହି ରାଧା-
ମନୁନୟ ମଦ୍‌ବଚନେନ ଚାନୟେଥାଃ
ଇତି ମଧୁରିପୁଣା ସଖୀ ନିଯୁକ୍ତା
ସ୍ୱୟମିଦମେତ୍ୟ ପୁନର୍ଜଗାଦ ରାଧାଂ । ୧ ।

---

ସୁଜନେ ମୃଦୁ ମଧୁର ବାଣୀ । ହରି-ବଚନେ ଆକୁଳ ରମଣୀମଣି ।୫୩। କହଇ ସଜନୀ ମଧୁରିପୁ ଅଗ୍ରତ । କୃଷ୍ଣକ୍ରୀଡାରସ ଷଟ୍‌ଛାନ୍ଦ ଭୁକତ ।୫୪। ଧୀନବନ୍ଧୁ ଦମ୍ଭାରିକୁ ପଙ୍କଜପଦ । ଧରଣୀଧରର ଶିରେ ଖଣ୍ଡେ ବଷାଦ ।୫୫।

---

ସପ୍ତମଛାନ୍ଦ
ରାଗ ମଙ୍ଗଳଗୁର୍ଜ୍ଜରୀ ।

ଏଥୁଅନନ୍ତରେ ଶୁଣ ରସିକ ସୁଜାଣ । ରାଧିକାର ବରହତ-ରହ ଯେତେମାନ ହୋ ।୧। କହନ୍ତ ସଜନୀ ସେ ଶୁଣିଲେ କମ୍ପୁପାଣି । ବୋଲନ୍ତି କୋମଳ ଯେ ଅମୃତରସ ବାଣୀ ଘୋ।୨।

ଦେଶବରାଡ଼ୀରାଗରୂପକତାଲାଭ୍ୟାଂ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ବନୋଥିତା ଦକ୍ଷିତଂ ସୁକେଶୀ ସୁକଙ୍କଣା ଚାମରଚାଲୟନ୍ତୀ ।
କଣ୍ଠେ ଦଧ ନା ସ୍ୱରଏଷ୍ଟଗୁଚ୍ଛଂ ବରାଙ୍ଗନେୟଂ କଥିତା ବରାଡ଼ୀ ।

ବହତି ମଲୟ ସମୀରେ ମଦନମୁପନିଧାୟ
ସ୍ଫୁଟତି କୁସୁମନିକରେ ବିରହିହୃଦୟ ଦଳନାୟ ।
ସଖି ହେ ସୀଦତି ତବ ବିରହେ ବନମାଳୀ । ୨ । ଧ୍ରୁବ ।
ଦହତି ଶିଶିରମୟୂଖେ ମରଣମନୁକରୋତି ।
ପତତି ମଦନବିଶିଖେ ବିଳପତି ବିକଳତରୋଽତି । ୩ ।
ଧ୍ୱନତି ମଧୁପସମୂହେ ଶ୍ରବଣମପି ଦଧାତି ।
ମନସି ବଳିତବିରହେ ନିଶି ନିଶି ରୁଜମୁପଯାତି । ୪ ।
ବସତି ବିପିନବିତାନେ ତ୍ୟଜତି ଲଳିତମପି ଧାମ ।

---

ଶୁଣ ତୁ ସଜନ ମୁଁ ଏ ବନେ ବସିଛଇଁ । ମୋହର ବଚନେ ରାଧିକାଙ୍କୁ ଆଣ ଯାଇଁ ଗୋ । ୩ । ମଧୁରପୁଆଙ୍କାରେ ଚଳନ୍ତି ସହଚରୀ । ପୁନରପି ଭେଟିଲା ସେ ରାଧିକା ସୁନ୍ଦରୀ ଯେ । ୪ । କହଇ ସଖୀର ଆଗେ ହରିକଥାମାନ । ଶୁଣ ତୁ ସୁନ୍ଦରି ଯେ ହୋଇଣ ସାବଧାନ ଗୋ । ୫ । ତୋହର ବିରହେ ବନମାଳୀ ଅତି ଦୁଃଖୀ । ବିଷାଦରେ ବହିଅଛନ୍ତି ଅଇଲି ମୁଁ ଦେଖି ଗୋ ।୬ । ମଦନସଙ୍ଗତେ ବହେ ମଳୟପବନ । ଫୁଟିଲେ କୁସୁମ ହଇ ହୃଦବିଦାରଣ ଗୋ । ୭ । ଚନ୍ଦ୍ରମା କିରଣ ପଡ଼େ ଦହେ କାମବାଣ । ବିକଳେ ବିଳାପି ମନେ ଇଚ୍ଛଇ ମରଣ ଗୋ । ୮। ଭୃଙ୍ଗକୁଳଧ୍ୱନି ଶୁଣି ରୁନ୍ଧଇ ଶ୍ରବଣ । ବିରହେ ଚଞ୍ଚଳ ଅତି ନିଶି ହେବା ଖିଣ୍ଣ ଗୋ । ୯ । ବସିଛନ୍ତି

ଲୁଠତି ଧରଣୀଶୟନେ ବହୁ ବିଲପତି ତବ ନାମ । ୫ ।
ଭଣତି କବି ଜୟଦେବେ ବିରହବିଳସିତେନ ।
ମନସି ରଭସବିଭବେ ହରିରୁଦୟତୁ ସୁକୃତେନ । ୬ ।
ପୂର୍ବଂ ଯତ୍ର ସମଂ ତ୍ୱୟା ରତିପତେରାସାଦିତାଃ ସିଦ୍ଧୟ-
ସ୍ତସ୍ମିନ୍ନେବ ନିକୁଞ୍ଜମନ୍ମଥମହାତୀର୍ଥେ ପୁନର୍ମାଧବଃ ।
ଧ୍ୟାୟଂସ୍ତ୍ୱାମନିଶଂ ଜପନ୍ନପି ତବୈବାଳାପମନ୍ତ୍ରାକ୍ଷରଂ ।
ଭୂୟସ୍ତ୍ୱତ୍କୁଚକୁମ୍ଭନିର୍ଭରପରୀରମ୍ଭାମୃତଂ ବାଞ୍ଛତି ।। ୭ ।
ଗୁର୍ଜ୍ଜରୀରାଗେଣୈକତାଳୀତାଳାଭ୍ୟାଂ ଗୀୟତେ ।
ରତିସୁଖସାରେ ଗତମଭିସାରେ ମଦନମନୋହରବେଶଂ ।
ନ କୁରୁ ନିତମ୍ବିନି ଗମନବିଲମ୍ବନମନୁସର ତଂ ହୃଦୟେଶଂ ।

---

ରତିପତି ଛାଡ଼ି ଗୃହ ଅନୁପମ । ଶୋଇ ଅବନୀରେ ଶୋକେ ଧରି ତବ ନାମ ଗୋ । ୧୦ । କୃଷ୍ଣର ବିରହକଥା ଜୟଦେବ ଭଣି । ସକଳ ପୁଣ୍ୟ ସୁକୃତ ଲଭେ ଶୁଣି ପ୍ରାଣୀ ଯେ । ୧୧ । ପୂର୍ବରେ ତାହାର ତୋର ସମଯୋଗ ହୋଇ । ରତିପତି ଆଶା ପୂର୍ଣ୍ଣ ହୋଇଥିଲା ତହିଁ ଗୋ । ୧୨ । ଏବେ ସେହି ନିକୁଞ୍ଜ-ସଦନରେ ମାଧବ । ମନମଥତୀର୍ଥ କରି ଧ୍ୟାୟିଅଛି ତବ ଗୋ । ୧୩ । ତୋହର କ୍ରୀଡ଼ାଚରିତ ମନ୍ତ୍ର ଜପ କରି । ବାଞ୍ଛିତ ଫଳ ତାହାର ଶୁଣସି ସୁନ୍ଦରି ଗୋ । ୧୪। ଏ ତୋହର ସଘନ କଠିନ କୁଚ ଦୁଇ । ହୃଦେ ଭିଡ଼ି ପରୀରମ୍ଭ ସୁଧାରସ ପାଇଁ ଗୋ । ୧୫ । ସଧୀରେ ପବନ ବହେ ଯମୁନାର ତଟେ । ବସିଛନ୍ତି ବନମାଳୀ ଗୃହଁ ତୋତେ ବାଟେ ଗୋ । ୧୬ । ଚଳ କିତମ୍ବିନି ସଖି ବିଳମ୍ବ ନ କରି । କାମମନୋହରବେଶେ ହୋଇ ଅଭିସାରି ଗୋ । ୧୭ । ରତିସୁଖ କ୍ରୀଡ଼ାରସ ସଂସାର-

ଧୀରସମୀରେ ଯମୁନାତୀରେ ବସତି ବନେ ବନମାଳୀ ।
ପୀନପୟୋଧରପରିସରମର୍ଦ୍ଦନଚଞ୍ଚଳକରଯୁଗଶାଳୀ ।ଧ୍ରୁବ ।
ନାମସମେତଂ କୃତସଙ୍କେତଂ ବାଦୟତେ ମୃଦୁବେଣୁ ।
ବହୁ ମନୁତେ ନନୁ ତେ ତନୁ ସଙ୍ଗତପବନଚଳିତମପି ରେଣୁ
ପତତି ପତତ୍ରେ ବିଚଳତି ପତ୍ରେ ଶଙ୍କିତଭବଦୁପଯାନଂ ।
ରଚୟତି ଶୟନଂ ସଚକିତ ନୟନଂ ପଶ୍ୟତି ତବ ପନ୍ଥାନଂ ।
ମୁଖରମଧୀରଂ ତ୍ୟଜ ମଞ୍ଜୀରଂ ରିପୁମିବ କେଳିଷୁ ଲୋଳଂ ।
ଚଳ ସଖି କୁଞ୍ଜଂ ସତିମିରପୁଞ୍ଜଂ ଶୀଳୟ ନୀଳନିଚୋଳଂ । ୧୧।

---

ରେ ସାର । ପ୍ରାଣନାଥ ସନ୍ନିଧିକୁ ବେଗେ ଅନୁସର ଗୋ ।୧୮।
ତୋର ନାମ ଧରଣ ସେ ଦେବ ଗୋପୀନାଥ ।ବଜାଇ ମଧୁର
ବେଣୁ କରଇ ସଙ୍କେତ ଗୋ । ୧୯ । ପବନେ ଉଡ଼ଣା ରେଣୁ
ପଡ଼ିଲେ ଦେହର । ବହୁତ ପ୍ରକାରେ ମନେ ଘେନେ ଦା-
ମୋଦର ଗୋ । ୨୦ । ବୋଲଇ ରାଧାର ଅଙ୍ଗ-ମଳଯୁକ୍ତ
ରେଣୁ । ପବନ ସଙ୍ଗତେ ଉଡ଼ିପଡ଼େ ମୋର ତନୁ ଗୋ ।୨୧।
ବୃକ୍ଷରେ ପକ୍ଷୀ ବସନ୍ତେ ପଡ଼ନ୍ତେ ପକ୍ଷ ବାଜ । ଶଙ୍କିତ ହୁଅଇ ସେ
ଆସନ ପରତେଜ ଗୋ । ୨୨ । ତୋହର ଅଇଲା ପ୍ରାୟ ମଣଇ
ମୁରାର । ରଚନା କରଇ ଶଯ୍ୟା ପଲ୍ଲବ ବିସ୍ତାର ଯେ ।୨୩। ଚକିତ-
ନୟନ ହୋଇ ପୁଣ ପୁଣ ହର । ଚାହିଁଁଇ ତବ ଅଗମ ପଥ
ଅନୁସର ଗୋ ।୨୪। ଶୁଣ ତୁ ପ୍ରାଣର ସଖି ବଚନ ମୋହର ।
ଭୁଣିତଶବଦ ଏ ନୂପୁର ଦୂରକର ଗୋ । ୨୫ । କ୍ରୀଡ଼ାର
କାଳକୁ ଏହୁ ରିପୁ ପ୍ରାୟ ମଣି । ଗହନତମିରପଥେ ଚଳସି
ମିତଣି ଗୋ ।୨୬। ଅସିତବସନେ ତନୁ ପରିହିତ କର ।
ସ୍ୱଳ୍ପବେ ସୁବେଷ ହୋଇ ପଥ ଅନୁସର ଗୋ ।୨୭। ବିପରୀତ

ଉରସିମୁରାରେରୁପହିତହାରେ ଘନଇବ ତରଳବଳାକେ ।
ତଡ଼ିଦିବ ପୀତେ ରତିବିପରୀତେ ରାଜସି ସୁକୃତବିପାକେ ।୧୨।
ବିଗଳିତବସନଂ ପରିହୃତରସନଂ ଘଟୟ ଜଘନମପିଧାନଂ ।
କିଶଲୟଶୟନେ ପଙ୍କଜ ନୟନେ ନିଧିମିବ ହର୍ଷନିଧାନଂ ।୧୩।
ହରିରଭିମାନୀ ରଜନିରିଦାନୀମିୟମପି ଯାତି ବିରାମଂ ।
କୁରୁ ମମ ବଚନଂ ସତ୍ୱରରଚନଂ ପୂରୟ ମଧୁରିପୁକାମଂ ।୧୪।
ଶ୍ରୀ ଜୟଦେବେ କୃତହରିସେବେ ଭଣତି ପରମରମଣୀୟଂ ।
ପ୍ରମୁଦିତହୃଦୟଂ ହରିମତିସଦୟଂ ନମତ ସୁକୃତକମନୀୟଂ ।୧୫।

---

ରତିକାଳେ ମୁକୁତାର ହାର । ଅତି ସୁରଚିତ ମୁରରିପୁ-ହୃଦୟର ଗୋ । ୨୮ । ଯେସନେ ଶ୍ୟାମଳମେଘେ ବକପନ୍ତି ଶୋଭେ । ତବ ତନୁ ତଥିକ ତଡ଼ିତଲତା ପ୍ରାୟେ ଗୋ ।୨୯। ଅନେକକାଳର ପୁଣ୍ୟ ଲଭିଲୁ ସୁନ୍ଦରି । ଚଳ ଏବେ ମୋହର ବଚନ ହେଜୁ କରି ଗୋ । ୩୦ । ନବୀନପଲ୍ଲବେ ଶଯ୍ୟା ସୁବେଶ କରିଣ । ତୋର ଆଶେ ବହିଛନ୍ତି ରାଜୀବଲୋଚନ ଗୋ । ୩୧ । ତହିଁ ଯାଇଁ ପ୍ରବେଶ ହୋଇଲୁ ଯେତେବେଳେ । କୃଷ୍ଣଙ୍କୁ ଦେଖିଣ ତୁ ମନ୍ଦିରୁ କାମଭୋଳେ ଗୋ ।୩୨। ଏ ତୋହର ମେଖଳା ବସନ ଦୂର କର । ଘଟନ ଘନଜଘନ ସମର୍ପିବୁ ହରି ଗୋ । ୩୩ । ତୋତେ ଦେଖି ହରଷ ହୋଇବ କୃଷ୍ଣ ମନ । ନିଧିକି ପ୍ରାପତ ଯେହ୍ନେ ଦରିଦ୍ର ସଦନ ଗୋ । ୩୪ । ହରିବ ତୋହର ମନ ଜଗତଜୀବନ । ରଜନୀ ପ୍ରବେଶ କ୍ଷିଣ ହେଉଛନ୍ତି ଦିନ ଗୋ ।୩୫। ମୋହର ବଚନ କର ବେଗେ ସଜ ହୁଅ । ମଧୁରିପୁମନୋରଥ ବାଞ୍ଛା ତୁ ପୂରାଅ ଗୋ । ୩୬ । କୃଷ୍ଣର ସେବକ ଜୟଦେବ ଯାହା ଭଣେ । ପ୍ରଣାମୀଜନଙ୍କୁ

ବିକିରତି ମୁହୁଃ ଶ୍ୱାସନାଶାଃ ପୁରୋ ମୁହୁରୀକ୍ଷତେ
ପ୍ରବିଶତି ମୁହୁଃ କୁଞ୍ଜଂ ଗୁଞ୍ଜନ୍ମୁହୁର୍ବହୁ ତାମ୍ୟତି ।
ରଚୟତି ମୁହୁଃ ଶଯ୍ୟାଂ ପର୍ୟ୍ୟାକୁଲଂ ମୁହୁରୀକ୍ଷତେ
ମଦନକଦନକ୍ଳାନ୍ତଃ କାନ୍ତେ ପ୍ରିୟସ୍ତବ ବର୍ତ୍ତତେ । ୧୬ ।
ତ୍ୱଦ୍ୱାମ୍ୟେନ ସମଂ ସମଗ୍ରମଧୁନା ତିଗ୍ମାଂଶୁରସ୍ତଂଗତୋ
ଗୋବିନ୍ଦସ୍ୟ ମନୋରଥେନ ଚ ସମଂ ପ୍ରାପ୍ତଂ ତମଃସାନ୍ଦ୍ରତାଂ ।
କୋକାନାଂ କରୁଣସ୍ୱନେନ ସଦୃଶୀ ଦୀର୍ଘା ମଦଭ୍ୟର୍ଥନା
ତନ୍ମୁଗ୍ଧେ ବିଫଲଂ ବିଲମ୍ବନମସୌ ରମ୍ୟୋଽଭିସାରକ୍ଷଣଃ ।୧୭

---

ଦୟାକର୍ତ୍ତା ଏହୁ ବାଣୀ ଯେ । ୩୭ । ସେ ତୋହର ପତି ଅତି ଦୁଃଖେ ବର୍ତ୍ତିଅଛି । ନାସାଅଗ୍ରେ କେବଳ ନିଶ୍ୱାସ ବହୁଅଛି ଗୋ । ୩୮ କ୍ଷଣେ ମୂର୍ଚ୍ଛାଯାଇ କ୍ଷଣେ ହୁଅଇ ସଚେତ । କ୍ଷଣେ କୁଞ୍ଜଗୃହେ ପଶି ଗୃହାଁଇ ଦୁରିତ ଗୋ ।୩୯। ମଧୁକର-ବାଣୀ ତାକୁ ହୁତାଶନ ପ୍ରାୟେ । କ୍ଷଣକେ ପଲ୍ଲବଶଯ୍ୟା କରଇ ଉପାୟେ ଗୋ ।୪୧। ଆକୁଳ ହୋଇଣ ପୁଣ ପୁଣ ଯାଇ ମୋହ । ମଦନ ଦହନ କରୁଅଛି ତାର ଦେହ ଗୋ । ତୋ ଯୋଗି ଲୋତକ ତାର ବହେ ନିରନ୍ତର । ସମ୍ପୂର୍ଣ୍ଣ କି ମଧୁଫେଣୀ ସ୍ରବେ ଝର ଝର ଗୋ ।୪୨। ଦେଖସି ଦିବସନାଥ ବେଗେ ଅସ୍ତ ଗଲା । ଗୋବିନ୍ଦ ବେଦନାଅର୍ଥେ ରଜନୀ ହୋଇଲା ଗୋ । ୪୩। ଚକ୍ରବାକ ବିଚ୍ଛେଦକାରଣେ ଅତି ସ୍ୱବ । ମୋହର ପ୍ରାର୍ଥନା ତୋତେ ହେଲା ସେହି ଭାବ ଗୋ । ଶୁଣ ତୁ ସୁନ୍ଦରି ଏତେ ବିଲମ୍ବ ବିଫଳ । ରମ୍ୟସ୍ଥାନେ ଅଭି-ସାର କର ଏହୁ କାଳ ଗୋ । ୪୫ । ବୋଲଇ ସଜନୀ

ଅଶ୍ଳେଷାଦନୁଚୁମ୍ବନାଦନୁନଖୋଲ୍ଲେଖାଦନୁସ୍ୱାନ୍ତଜ-
ପ୍ରୋଦ୍‌ବୋଧାଦନୁସମ୍ଭ୍ରମାଦନୁରତାରମ୍ଭାଦନୁପ୍ରୀତୟୋଃ ।
ଅନ୍ୟାର୍ଥଂ ଗତୟୋର୍ଭ୍ରମାନ୍ମିଳିତୟୋଃ ସମ୍ଭାଷଣୈର୍ଜ୍ଜାନତୋ
ର୍ଦମ୍ପତ୍ୟୋରିହ କୋ ନ କୋ ନ ତମସି ବ୍ରୀଡ଼ାବିମିଶ୍ରୋ ରସଃ ।
ସଭୟଚକିତଂ ବିନ୍ୟସ୍ୟନ୍ତୀଂ ଦୃଶୌ ତିମିରେ ପଥି
ପ୍ରତିତରୁ ମୁହୁଃ ସ୍ଥିତ୍ୱା ମନ୍ଦଂ ପଦାନି ବିତନ୍ୱତୀଂ ।

ଏକାନ୍ତେ ରଜନୀଘୋର । ଶୁଣହେରୁ କୁଳଟାବାମା କରନ୍ତି ଅଭିସାର ଗୋ ।୪୭। ତାହାର ବଲ୍ଲଭ ପରରମଣୀର ଅଶେଷ । ସଙ୍କେତ ସ୍ଥାନକୁ ସେକୁ ଗମଇ ହରଷେ ଗୋ ।୪୭। ନିବିଡ ଅନ୍ଧାର ଭୂମି ଭେଟ ହୋଏ କେନ । ନିଜ ପତି ସତୀ ବୋଲି ନ ପାର-ଲେ ଚିହ୍ନି ଗୋ ।୪୮। ଯାହାର ପାଇଁ ଗମିଲେ ତାହା ପ୍ରାପ୍ତ ମଣି । କରନ୍ତି ବିବିଧ କେଳିରସ ପରମାଣି ଗୋ ।୪୯। ଭୂଜେ ଭିଡ ଆଲିଙ୍ଗନ ବଦନେ ଚୁମ୍ବନ । କଠିନ କୁଚରେ ତୀକ୍ଷ୍ଣନଖକ୍ଷତମାନ ଗୋ । ୫୦ । ବଢ଼ିଲା ସୁରତ ସେ ଶବ୍ଦେ ମୃଦୁସ୍ୱରେ । ଜାଣି ଲାଜ ପାଇଲେ ଯେ ସୁରତ-ଶେଷରେ ଗୋ ।୫୧। ସାନ୍ଧ୍ୟକାରେ କିଛି ନ ଜାଣିଲେ କେହୁ । ଜାତେଣ ସୁରତରସ ଆରମ୍ଭିଲେ ତହୁଁ ଗୋ ।୫୨। ତେସନ ପ୍ରାୟକ ଏନ୍ତୁ ହୋଇଛି ରଜନୀ । ହରି ପାଶେ ଅଭି-ସାର କର ତୁ ମିତଣି ଗୋ ।୫୩। ସଭୟ ଚକିତ ଦୂର କରି ତୋର ମନ । ଗହନ ତିମିର ପଥେ କରସି ଗମନ ଗୋ ।୫୪। ତରୁତଳେ କ୍ଷଣେ କ୍ଷଣେ ବିଶ୍ରାମ କରିବୁ । ଧୀରେ ଧୀରେ କୁଞ୍ଜସଦନେ ମିଳିବୁ ଗୋ । ୫୫ । ଶୁଭଯୋଗେ ସୁମୂର୍ତ୍ତି କରସି ଅନୁକୂଳ । ଏ ମୋର ବଚନେ

କଥମପି ରହଃ ପ୍ରାପ୍ତମଙ୍ଗୈରନଙ୍ଗତରଙ୍ଗିଭିଃ
ସ୍ମୃମୁଖି ସୁଭଗଃ ପଶ୍ୟନ୍ ସ ତ୍ୱାମୁପୈତୁ କୃତାର୍ଥତାଂ । ୧୯ ।
ରାଧାମୁଗ୍ଧମୁଖାରବିନ୍ଦମଧୁପସ୍ତ୍ରୈଲୋକ୍ୟମୌଳିସ୍ଥଲୀ
ନେପଥ୍ୟୋଚିତନୀଳରତ୍ନମବନୀଭାରାବତାରାନ୍ତକଃ ।
ସ୍ୱଚ୍ଛନ୍ଦଂ ବ୍ରଜସୁନ୍ଦରୀଜନମନସ୍ତୋଷପ୍ରଦୋଷଶ୍ଚିରଂ
କଂସଧ୍ୱଂସନଧୂମକେତୁ ରବତୁ ତ୍ୱାଂ ଦେବକୀନନ୍ଦନଃ । ୨୦ ।

ଇତି ଶ୍ରୀଗୀତଗୋବିନ୍ଦେ ଅଭିସାରିକାବର୍ଣ୍ଣନେ
ସାକାଂକ୍ଷପୁଣ୍ଡରୀକାକ୍ଷୋ ନାମ ପଞ୍ଚମଃ ସର୍ଗଃ ।

---

ସଖି ନ କରସି ହେଳ ଗୋ । ୫୬ । ଅନଙ୍ଗତରଙ୍ଗେ ତର-
ଳବ ତୋର ତନୁ । କୃତାର୍ଥ ହୋଇବ ତୋତେ ଦେଖି
ନନ୍ଦସୂନୁ ଗୋ । ୫୭ । ଶୁଣ ହେ ସୁଜନେ ମନେ ସାବଧାନ
ହୋଇ । କୃଷ୍ଣର ବିରହ ଦୂତି ରାଧାଆଗେ କହି ଯେ । ୫୮ ।
ବୁଦ୍ଧିବଳେ ଯେତେକ ସେ କହିଲା ମଣାଇ । ଶୁଣି ଚନ୍ଦ୍ରବଦନୀ
ଭୂମିକି ଦୃଷ୍ଟି ଦେଇ ଯେ । ୫୯ । କୃଷ୍ଣକ୍ରୀଡ଼ାରସ ଏ ବିରସ
ଭାପ ଗଞ୍ଜେ । ସପତମ ଛାନ୍ଦ ଏ ରସିକମନ ରଞ୍ଜେ ଯେ ।୬୦।
ନୀରଜନୟନୀନୀରନିଧି ସୁଧାପତି । ପାଦ ଅରବିନ୍ଦ ଲୋଭେ
ମକରନ୍ଦ ସ୍ଥିତ ଯେ ।୬୧। ମଧୁକର ଯେସନେ ଧରଣୀଧରମତି।
ହରିର ଶରଣ ବିନୁ ନାହିଁ ଅନ୍ୟ ଗତି ଯେ । ୬୨ ।

## ଷଷ୍ଠସର୍ଗଃ ।

ଅଥ ତାଂ ଗନ୍ତୁମଶକ୍ତାଂ ଚିରମନୁରକ୍ତାଂ ଲତାଗୃହେ ଦୃଷ୍ଟ୍ୱା ।
ତଚ୍ଚରିତଂ ଗୋବିନ୍ଦେ ମନସିଜମନ୍ଦେ ସଖୀ ପ୍ରାହ । ୧ ।
ଗୋଣ୍ଡକରୀରାଗେଣ ରୂପକତାଳେନ ଚ ଗୀୟତେ ।

ଅସ୍ୟ ଲକ୍ଷଣଂ ।

ଉତ୍କୋତ୍ପ୍ରେକ୍ଷାକାନ୍ତପଥପ୍ରତୀକ୍ଷା ସମ୍ଭାବୟନ୍ତୀ ମୃଦୁପୁଷ୍ପତଳ୍ପଂ ।
ଇତସ୍ତତଃ ପ୍ରେରିତଦୃଷ୍ଟିର୍ବର୍ତ୍ତ୍ୟ ମାଂ ତନୁର୍ଗୋଣ୍ଡକରୀ ପ୍ରଦିଷ୍ଟା ।

ପଶ୍ୟତି ଦିଶି ଦିଶି ରହସି ଭବନ୍ତଂ ।
ତ୍ୱଦଧରମଧୁରମଧୂନି ପିବନ୍ତଂ ।
ନାଥ ହରେ ସୀଦତି ରାଧା ବାସଗୃହେ ।୨। ଧ୍ରୁବଂ ।
ତ୍ୱଦଭିସରଣରଭସେନ ବଲନ୍ତୀ ।
ପତତି ପଦାନି କିୟନ୍ତି ଚଲନ୍ତୀ । ୩ ।

---

ଅଷ୍ଟମସ୍ଥାନ । ମଙ୍ଗଳ ।

ରାଧିକାଙ୍କୁ ବୁଝାଇ ସେ ଚଳନ୍ତି ତରୁଣୀ । ମିଳନ୍ତି ଗୋବିନ୍ଦ ପାର୍ଶ୍ୱେ ସଖୀଦୁଃଖ ଘେନ । ୧ । ଶୁଣ ତୁ ମାଧବ ରାଧା ଅତ୍ୟନ୍ତ ବିରହୀ । ତୋର ପାଶେ ଆସିବାକୁ ଅଶକ୍ତ ଦେହୀ । ୨ । ଚିରକାଳୁଁ ତୋରେ ଅନୁରାଗିଣୀ ତରୁଣୀ । ତୋହର ଚରିତମାନ ନିଶି ଦିବା ଗୁଣି । ୩ । ମନ୍ଦ ମନସିଜ ତାର ଦହଇ ସେ ମନ। ଲତାଗୃହେ ଦେଖିଲି ସୁତନୁ ଅତି ଖିନ୍ନ । ୪। ବସିଣ ଗୃହେଁ ଚାହିଁ ସଖୀ ସେ ସକଳ ଦିଶ । ତୋହର ମଧୁରାଧର ପାନେ ପ୍ରତି-ଆଶ । ୫ । ବିଷାଦ କୁଞ୍ଜସଦନେ ରାଧିକାସୁନ୍ଦରୀ । ଜଗତର ନାଥ ପ୍ରଭୁ ଶୁଣ ନରହରି । ୬ । ତୋହର ଶରଣ ବୋଲି ଡାକଇ ନିର୍ଭରେ । ଚରଣେ ଚଳି ନ ପାରି ପଡଇ ଭୂମିରେ ।

ମୁହୁରବଲୋକିତମଣ୍ଡନଲୀଲା ।
ମଧୁରିପୁରହମିତି ଭାବନଶୀଲା । ୪ ।
ତ୍ୱରିତମୁପୈତି ନ କଥମଭିସାରଂ ।
ହରିରିତି ବଦତି ସଖୀମନୁବାରଂ । ୫ ।
ବିହିତବିଶଦବିସକିସଲୟବଲୟା ।
ଜୀବତି ପରମିହ ତବ ରତିକଳୟା । ୬ ।
ଶ୍ଲିଷ୍ୟତି ଚୁମ୍ବତି ଜଲଧରକଳ୍ପଂ ।
ହରିରୁପଗତ ଇତି ତିମିରମନଳ୍ପଂ । ୭ ।
ଭବତି ବିଲମ୍ବିନି ବିଗଳିତଲଜ୍ଜା ।
ବିଲପତି ରୋଦିତି ବାସକସଜ୍ଜା । ୮ ।
ଶ୍ରୀଜୟଦେବକବେରିଦମୁଦିତଂ ।
ରସିକଜନଂ ତନୁତାମତି ମୁଦିତଂ । ୯ ।

---

ଭୂଷଣ ହୋଇ ଅଙ୍ଗକୁ ଚାହିଁଛି ଅଙ୍ଗନା । ମଧୁରିପୁ ଆଭରଣେ ଏହିମାନ ସିନା । ୮ । ତ୍ୱରିତଇ ଏ ସଙ୍କେତ ସ୍ଥାନକୁ ମୁରାରି । ନଇଲା ଯିବରତେ ସେହୁ କି କଥା ବିଚାରି । ୯ । ଏତେ ବୋଲି ଚିତ୍ତ ସ୍ଥିର କରଣ ସୁନୟନୀ । ବାର ବାର ବୋଲୁଅଛି ସେହି ହରି ହରି । ୧୦ । ତବ ରତିରସ ଆଶେ ଜୀବନ ସେ ଧରି । କମଳମୃଣାଳ ବଳୟ କଙ୍କଣ କରି । ୧୧ । ଗହନ ତିମିର କୁଞ୍ଜ-ଭୁବନକୁ ଦେଖି । ଜଳଧର ମେଘ ତ ଏ ସଖୀ ଉପଲକ୍ଷି । ୧୨ ତୋର ରୂପ ବୋଲି ସେହୁ କରଇଟି କୋଳ । ଶୂନ୍ୟକୁ ଚୁମ୍ବନ ଦେଇ ହୁଅଇ ସେ ଭୋଳ । ୧୩ । ଏ ତୋର ଗମନକୁ ହରି ବିଲମ୍ବ ଦେଖି । ଲଜ୍ଜା ଛାଡ଼ି ବିଲାପ ରୋଦନ କରେ ସଖୀ । ୧୪ ଶ୍ରୀଜୟଦେବ କବିଙ୍କ ରଚିତ ଏ ଗୀତ । ଗାନେ ରସିକଙ୍କ

ବିପୁଲପୁଲକପାଳିଃ ସ୍ଫୀତଶୀତ୍କାରମନ୍ତ-
ର୍ଜ୍ଜନିତଜଡ଼ିମକାକୁ ବ୍ୟାକୁଲଂ ବ୍ୟାହରନ୍ତୀ ।
ତବ କିତବ ବିଧାୟାମନ୍ଦକନ୍ଦର୍ପଚିନ୍ତାଂ
ରସଜଲଧିନିମଗ୍ନା ଧ୍ୟାନଲଗ୍ନା ମୃଗାକ୍ଷୀ । ୧୦ ।

ଅଙ୍ଗେଷ୍ୱାଭରଣଂ କରୋତି ବହୁଶଃ ପତ୍ରେଽପି ସଞ୍ଚାରିଣି
ପ୍ରାପ୍ତଂ ତ୍ୱାଂ ପରିଶଙ୍କତେ ବିତନୁତେ ଶଯ୍ୟାଂ ଚିରଂ ଧ୍ୟାୟତି ।
ଇତ୍ୟାକଳ୍ପବିକଳ୍ପତଳ୍ପରଚନାସଙ୍କଳ୍ପଲୀଳାଶତ-
ବ୍ୟାସକ୍ତାପି ବିନା ତ୍ୱୟା ବରତନୁର୍ନୈଷା ନିଶାଂ ନେଷ୍ୟତି।୧୧

ମନେ ହର୍ଷ ହେଉ ଜାତ ।୧୬। ବିପୁଳ ପୁଲକ ଘନ କପୋଳ ତାହାର । ଅନ୍ତରେ ଜଡ଼ିତ ଶୀତ ସାତ୍ୱିକବିକାର । ୧୭ । ବ୍ୟାକୁଳ ହୋଇଣ ବାଣୀ ନ ପାରଇ କହି । ମନସିଜ-ଚିନ୍ତା-ତାପ କେସନେକ ସହି । ୧୭ । ବୁଡ଼ିଲା ମଦନସିନ୍ଧୁରେ ଶିଶୁ-ମୃଗାକ୍ଷୀ । ଶୁଣ ଧୂର୍ତ୍ତ ତୋତେ ମାତ୍ର ଧ୍ୟାନରେ ନିରେଖି ।୧୮। ନାନା ଅଲଙ୍କାରମାନ ଅଙ୍ଗେ ଭୂଷି ହୋଇ । ପବନେ ଚଳନ୍ତେ ପତ୍ର ଚତୁର୍ଦ୍ଦିଗେ ଚାହିଁ । ୧୯ । ତୋହର ଆଗତ ହେଲା ପ୍ରାପ୍ତେ ମଣେ ସଖି । କାମଶଯ୍ୟା ବିହିଣ ବହୁତ ବେଳ ଧ୍ୟାୟି । ୨୦ । କଳ୍ପନା କଳ୍ପକ ମନେ ଅତ୍ୟନ୍ତ ହରଷେ । ଶଯ୍ୟା ନିର୍ମ୍ମା କଲା ଜନ୍ମେ ତବ କେଳିଅଶେ ।୨୧। ଯହୁଁ ତୋତେ ନ ଦେଖିଲା ସେ କମଳମୁଖୀ । ହୃଦୟରେ ଘୋର ଅତି କାମଶରେ ଦୁଃଖୀ ।୨୨। ଏସନ ପ୍ରକାରେ ନିଶି ନଥଇ କାମିନୀ । ବାରେ ଯାଇ କର ନାଥ ମୋ ବିନୟ ଘେନି ॥ ଶୁଣ ହେ ସୁଜନ-ଜନେ ମନ କର ସ୍ଥିର । ତାପ ଛମିରକୁ ହରିନାମ ଶଶଧର ॥ ସୁଧାର ତରଙ୍ଗମାନ ଗୋବିନ୍ଦର ଅଙ୍ଗେ । କହଇ ସଜନୀ ସେ

ତ୍ୱଂ ବଞ୍ଚାମସି କୃଷ୍ଣଭ୍ରେଗିଭବନେ ଭଣ୍ଡୀରଭୂମିରୁହେ ।
ଭ୍ରାତର୍ଯାହି ନ ଦୃଷ୍ଟିଗୋଚର ମିତଃ ସାନନ୍ଦନନ୍ଦାସ୍ପଦଂ ।
ରାଧାୟା ବଚନଂ ତଦଧ୍ୱଗମୁଖାନ୍ନନ୍ଦାନ୍ତିକେ ଗୋପତୋ-
ର୍ଗୋବିନ୍ଦସ୍ୟ ଜୟନ୍ତି ସାୟମତିଥିପ୍ରାଶସ୍ତ୍ୟଗର୍ଭା ଗିରଃ । ୧୨ ।

ଇତି ଶ୍ରୀଗୀତଗୋବିନ୍ଦେ ବାସକସଜ୍ଜାବର୍ଣ୍ଣନେ
ଧୃଷ୍ଟବୈକୁଣ୍ଠୋ ନାମ ଷଷ୍ଠଃ ସର୍ଗଃ ।

---

## ସପ୍ତମଃ ସର୍ଗଃ ।

ଅତ୍ରାନ୍ତରେ ଚ କୁଳଟାକୁଳବର୍ତ୍ମପାତ-
ସଞ୍ଜାତପାତକ ଇବ ସ୍ଫୁଟଲାଞ୍ଛନଶ୍ରୀଃ ।
ବୃନ୍ଦାବନାନ୍ତରମଦୀପୟଦଂଶୁଜାଲୈ-
ର୍ଦ୍ଦିକ୍ସୁନ୍ଦରୀବଦନଚନ୍ଦନବିନ୍ଦୁରିନ୍ଦୁଃ । ୧ ।

---

ମଧୁରମୃଦୁଭାବେ । ୨୫ । ଶ୍ରୀକୃଷ୍ଣଙ୍କ କ୍ରୀଡ଼ାରସ ଏ ଅଷ୍ଟମ ଛାନ୍ଦ । ଧରଣୀଧରର ଶିରେ ଶ୍ରୀମୁକୁନ୍ଦପାଦ । ୨୬ ।

---

## ନବମ ଛାନ୍ଦ । ରାଗ ଚିନ୍ତାଭୈରବ ।

ଏଥୁ ଅନନ୍ତରେ ଶୁଣ ରସ । ସଖୀ ପେଶି ଗୋବିନ୍ଦ ପାଶ । ଏକାକୀ ହୋଇ ସେ ଘୋରଅରଣ୍ୟରେ ନଣି ଅନ୍ଧାରେ ନାହିଁ ନା ତ୍ରାସ ସେ, ସୁନ୍ଦରୀ । ୧ । ଚିର ବିରହେ ଅତୁଳ ଭାର । ତନୁ ପୂରଇ ମଦନ ଜ୍ୱର । କପୋଳତଳେ ପଦ୍ମକର ଦେଇ ସେ ବସିଅଛି ଅତି ଶୋକଭର ସେ, ସୁନ୍ଦରୀ । ୨ । ଏସନକ ସମୟରେ ତହିଁ । ଉଦେ ହୋଇଲା ରଜନୀସାଇଁ । ଅଭିସାରୀ ପଥ ନଷ୍ଟେଧିଲା ଯହୁଁ ତଥି ଦୋଷରେ କଳଙ୍କ

ପ୍ରସରତି ଶଶଧର ବିମ୍ବେ ବିହିତବିଲମ୍ବେ ଚ ମାଧବେ ବିଧୁରା ।
ବିରଚିତ ବିବିଧବିଳାପଂ ସା ପରିତାପଂ ଚକାରୋଚ୍ଚୈଃ । ୨ ।

ମାଳବରାଗ ଯତିତାଲାଭ୍ୟାଂ ଗୀୟତେ ।
କଥିତସମୟେଽପି ହରିରହହ ନ ଯଯୌ ବନଂ ।
ମମ ବିଫଳମିଦମମଳମପି ରୂପଯୌବନଂ ।
ଯାମି ହେ କମିହ ଶରଣଂ ସଖୀଜନବଚନବଞ୍ଚିତା । ଧ୍ରୁ
ଯଦନୁଗମନାୟ ନିଶି ଗହନମପି ଶୀଳିତଂ ।
ତେନ ମମ ହୃଦୟମିଦମସମଶରକୀଳିତଂ । ୪ ।
ମମ ମରଣମେବ ବରମତିବିତଥକେତନା ।
କିମିହ ବିସହାମି ବିରହାନଳମଚେତନା । ୫ ।

---

ଟିକା ସେ, ଚନ୍ଦ୍ରମା ।୩। ତାର ଦୀପ୍ତି କରଣ ଅଭାସେ । ବୃନ୍ଦାବନେ ସୁରଙ୍ଗ ପ୍ରକାଶେ । ପୂର୍ବଦିଗ ନାରୀ ବଦନରତିଳକ ରୂପେ ଚନ୍ଦନବିନ୍ଦୁ ପ୍ରକାଶେ ସେ, ଚନ୍ଦ୍ରମା । ୪ । ଯହୁଁ ଶଶିବିମ୍ବ ପ୍ରକାଶିଲା । ରାଧା ତାପସିନ୍ଧୁ ଉଚ୍ଛୁଳିଲା । ବିଲମ୍ବ ଦେଖି ସେ ମାଧବଗମନ ନାନାପ୍ରକାରେ ବିଳାପ କଲା ସେ । ସୁନ୍ଦରୀ ।୫। ବୋଲେ କୃଷ୍ଣ ମୋହର ହୋଇଲା । ଯହୁଁ ହରି କେବେହେଁ ନ ଇଲା । ଯୁବାବୟସେ ଏ ରୂପଯଉବନ ମୋର ସକଳ ବିଫଳ ହେଲା ହେ । ଦଇବ । ୬ । ମୁହିଁ କାହାରେ ଶରଣ ଯିବି । କାମଶର କେସନେ ସହିବି । ଉଣ୍ଡିଲା ମୋତେ ସେ ସଖୀ ବଚନେ ଆଉ କାହାକୁ କିସ କହିବି ହେ । ଦଇବ ।୭। ଯାହାପାଇଁ ଅଇଲି ଏ ବନେ । ନିଶି ତିମିର ଅତିଗହନେ । ସେ କୃଷ୍ଣ କଲା ଏ ହୃଦୟେ ମୋହର କାମଶର ବିନ୍ଧେ ଅନୁକ୍ଷଣେ ହେ । ଦଇବ । ୮ । ଏହୁ ବିଅର୍ଥ ସଙ୍କେତ ସ୍ଥାନ ।

